|| ଶ୍ରୀହରିଃ ||

# କର୍ମ ରହସ୍ୟ




ସ୍ୱାମୀ ରାମସୁଖଦାସ

817

।। ଶ୍ରୀହରିଃ ।।

# କର୍ମ ରହସ୍ୟ



ଲେଖକ- ସ୍ୱାମୀ ରାମସୁଖଦାସ

ଓଡ଼ିଆ ଭାଷାନ୍ତର- ସଞ୍ଜୟ କୁମାର ମିଶ୍ର

ପ୍ରକାଶକ- ଗୋବିନ୍ଦଭବନ-କାର୍ଯ୍ୟାଳୟ, ଗୀତାପ୍ରେସ, ଗୋରଖପୁର


| | | |
|---|---|---|
| First Edition | 1997 | 10,000 Copies |
| Second Edition | 1997 | 10,000 Copies |
| Third Edition | 1998 | 10,000 Copies |
| | | Total 30,000 Copies |


Price: Rs. 2.00

ମୁଦ୍ରକ-ଗୀତାପ୍ରେସ, ଗୋରଖପୁର- ୨୭୩୦୦୫

ଦୂରଭାଷା : ୩୩୪୭୨୧

# ନମ୍ର ନିବେଦନ

ବର୍ତ୍ତମାନ ସମୟରେ 'କର୍ମ' ସମ୍ବନ୍ଧୀୟ କେତେକ ଭ୍ରମ ଧାରଣା ଲୋକ ମାନଙ୍କ ହୃଦୟରେ ବ୍ୟାପି ଯାଇଛି । ଏଣୁ ଏହାକୁ ବୁଝିବା ବର୍ତ୍ତମାନ ଯୁଗରେ ବିଶେଷ ଆବଶ୍ୟକ । ଆମର ପରମଶ୍ରଦ୍ଧେୟ ସ୍ୱାମୀ ଶ୍ରୀରାମସୁଖଦାସଜୀ ମହାତ୍ମାଙ୍କ ଦ୍ୱାରା ଶ୍ରୀମଦ୍‌ଭଗବଦ୍ ଗୀତାର ସାଧକ-ସଞ୍ଜୀବନୀ ନାମକ ହିନ୍ଦି-ଟୀକାରେ ଏହାକୁ ବହୁତ ସୁନ୍ଦର, ସୁବୋଧ ଏବଂ ସରଳ ଢ଼ଙ୍ଗରେ ବିବେଚନା କରାଯାଇଥିବା ବିଷୟକୁ ଏହି ପୁସ୍ତକ ରୂପେ ଅଲଗାରେ ପ୍ରକାଶିତ କରାଯାଉଛି । ପ୍ରତ୍ୟେକ ଭାଇ-ଭଉଣୀ ମାନେ ଏହି ପୁସ୍ତକଟିକୁ ନିଜେ ପଢ଼ିବା ସହିତ ଅନ୍ୟମାନଙ୍କୁ ପଢ଼ିବା ପାଇଁ ପ୍ରୋତ୍ସାହିତ ମଧ୍ୟ କରିବା ଉଚିତ୍ । ଉକ୍ତ ପୁସ୍ତକଟିକୁ ପଢ଼ିବା ଦ୍ୱାରା କର୍ମ ସମ୍ବନ୍ଧୀୟ ଅନେକ ପ୍ରଶ୍ନର ସମାଧାନ ହୋଇଯିବ ବୋଲି ଆମର ଅଟଳ ବିଶ୍ୱାସ ରହିଅଛି । ଅତଏବ ଭଗବତ୍ ପ୍ରାପ୍ତି ଚାହୁଁଥିବା ସାଧକ ମାନଙ୍କୁ ଏହି ପୁସ୍ତକଟିକୁ ଥରେମାତ୍ର ଅବଶ୍ୟ ପଢ଼ିବା ପାଇଁ ଅନୁରୋଧ । ପାଠକ-ପାଠିକା ମାନଙ୍କୁ ଆଉ ଗୋଟିଏ ବିଶେଷ ଅନୁରୋଧ କି, କେବଳ ଶବ୍ଦ ଉପରେ ଦୃଷ୍ଟି ନଦେଇ, ଏହାର ଗଭୀର ଭାବ ଉପରେ ଦୃଷ୍ଟି ରଖିବା ଉଚିତ୍ । ଯଦି ଭୁଲବଶତଃ କୌଣସି ଶାବ୍ଦିକ ତ୍ରୁଟି ରହିଯାଇଥାଏ, ତେବେ ଦ୍ୱିତୀୟ ସଂସ୍କରଣରେ ତାହାକୁ ଦୂର କରିଦିଆଯିବ ।

**-ପ୍ରକାଶକ**

# ସୂଚୀପତ୍ର

*ବିଷୟ* *ପୃଷ୍ଠା*

୧· କର୍ମ ରହସ୍ୟ........................................................୧

୨· ବର୍ଣ୍ଣ ବ୍ୟବସ୍ଥାର ତାତ୍ପର୍ଯ୍ୟ........................................୩୪

୩· ଜାତି ଜନ୍ମରୁ ମାନିବା ନା କର୍ମରୁ?....................୩୭

୪· ନିଜ କର୍ମଦ୍ୱାରା ଭଗବାନଙ୍କର ପୂଜନ......................୪୯

୫· ସମତା କେମିତି ରଖିବା?.......................... ..୫୨

।। ଓଁ ଶ୍ରୀପରମାତ୍ମନେ ନମଃ ।।

# କର୍ମ-ରହସ୍ୟ

ପୁରୁଷ ଏବଂ ପ୍ରକୃତି-ଏ ଦୁଇଟି ଭିନ୍ନଅଟେ । ଏଥିମଧ୍ୟରୁ ପୁରୁଷ ଠାରେ କେବେ ପରିବର୍ତ୍ତନ ହୁଏନାହିଁ ଏବଂ ପ୍ରକୃତି କେବେ ପରିବର୍ତ୍ତନ ରହିତ ହୁଏନାହିଁ । ଯେତେବେଳେ ପୁରୁଷ ପ୍ରକୃତି ସହିତ ସମ୍ବନ୍ଧ ସ୍ଥାପନ କରେ, ସେତେବେଳେ ପ୍ରକୃତିର କ୍ରିୟା ପୁରୁଷର 'କର୍ମ' ରୂପେ ପରିଣତ ହୋଇଯାଏ । କାହିଁକି ନା, ପ୍ରକୃତି ସହିତ ସମ୍ବନ୍ଧ ସ୍ଥାପନଦ୍ୱାରା ତାହାସହିତ ଏକତା ହୋଇଯାଏ । ଏକାତ୍ମତା ହେବାଦ୍ୱାରା, ଯାହାକିଛି ପ୍ରାକୃତିକବସ୍ତୁ ପ୍ରାପ୍ତ ହୋଇଛି ସେଥିରେ ମମତା ହୋଇଯାଏ, ଏବଂ ସେହି ମମତା କାରଣରୁ ଅପ୍ରାପ୍ତ ବସ୍ତୁକୁ ପ୍ରାପ୍ତ କରିବା ପାଇଁ କାମନା ଉତ୍ପନ୍ନ ହୁଏ । ଏହିପରି ଯେପର୍ଯ୍ୟନ୍ତ କାମନା, ମମତା ଏବଂ ଏକାତ୍ମତା ରହେ, ସେ ପର୍ଯ୍ୟନ୍ତ ଯାହାକିଛି ପରିବର୍ତ୍ତନରୂପି କ୍ରିୟାହୁଏ ତାହାରନାମ 'କର୍ମ' ଅଟେ ।

ପ୍ରକୃତି ସହିତ ଥବା ଏକାତ୍ମତାରୁ ମୁକ୍ତି ହେବାପରେ ସେହି କର୍ମ ପୁରୁଷ ପାଇଁ 'ଅକର୍ମରେ' ପରିଣତ ହୋଇଯାଏ, ଅର୍ଥାତ୍ ସେହି କର୍ମ କ୍ରିୟାମାତ୍ର ହୋଇରହେ, ସେଥିରେ ଜନ୍ମ-ମରଣରୂପକ ଫଳ ଦେବାର ଶକ୍ତି ରହେନାହିଁ- ଏହାହେଉଛି 'କର୍ମରେ ଅକର୍ମ' । ଅକର୍ମ ଅବସ୍ଥାରେ ଅର୍ଥାତ୍ ସ୍ୱରୂପର ଅନୁଭବ ହେବାପରେ ସେହି ମହାପୁରୁଷଙ୍କ ଶରୀରଦ୍ୱାରା ଯେଉଁ କ୍ରିୟା ହୁଏ, ତାହା 'ଅକର୍ମରେ କର୍ମ' ଅଟେ* । ଏହାର ତାତ୍ପର୍ଯ୍ୟ ଏହିକି, ନିଜ ନିର୍ଲିପ୍ତ ସ୍ୱରୂପର ଅନୁଭବ ନହେଲେ ମଧ୍ୟ ବାସ୍ତବରେ ପ୍ରତ୍ୟେକ କ୍ରିୟା ପ୍ରକୃତି ଏବଂ ତାର କାର୍ଯ୍ୟ ଶରୀରରେ ହୋଇଥାଏ । ପରନ୍ତୁ ପ୍ରକୃତି ବା ଶରୀରଠାରୁ ନିଜ ଭିନ୍ନତାର ଅନୁଭବ ନ ହେବାଦ୍ୱାରା ସେହି କ୍ରିୟା ଗୁଡ଼ିକ ' କର୍ମ ' ରୂପେ ପରିଣତ ହୋଇଯାଏ $ ।

---

*କର୍ମଣ୍ୟକର୍ମ ଯଃ ପଶ୍ୟେଦକର୍ମଣି ଚ କର୍ମ ଯଃ ।
ସ ବୁଦ୍ଧିମାନ୍ମନୁଷ୍ୟେଷୁ ସ ଯୁକ୍ତଃ କୃତ୍ସ୍ନକର୍ମକୃତ୍ ।।(ଗୀତା ୪।୧୮)

$ପ୍ରକୃତେଃ କ୍ରିୟମାଣାନି ଗୁଣୈଃ କର୍ମାଣି ସର୍ବଶଃ ।
ଅହଂକାର ବିମୂଢ଼ାତ୍ମା କର୍ତ୍ତାହମିତି ମନ୍ୟତେ ।।(ଗୀତା ୩।୨୭)
ପ୍ରକୃତ୍ୟୈବ ଚ କର୍ମାଣି କ୍ରିୟମାଣାନି ସର୍ବଶଃ ।
ଯଃ ପଶ୍ୟତି ତଥାତ୍ମାନମକର୍ତ୍ତାରଂ ସ ପଶ୍ୟତି ।।(ଗୀତା ୧୩।୨୯)

କର୍ମ ୩ପ୍ରକାରର ଅଟେ-କ୍ରିୟମାଣ, ସଞ୍ଚିତ ଏବଂ ପ୍ରାରବ୍ଧ । ବର୍ତ୍ତମାନ ଜନ୍ମରେ ଯେଉଁ କର୍ମ କରାଯାଉଛି ତାହାକୁ କ୍ରିୟମାଣ କର୍ମ କୁହାଯାଏ* । ଏହି ଜନ୍ମରେ କରିଥିବା ଅଥବା ପୂର୍ବରୁ ଅନେକ ମନୁଷ୍ୟ ଜନ୍ମରେ କରିଥିବା କର୍ମ ଯାହାକିଛି ସଂଗୃହିତ ହୋଇରହିଛି, ତାହାକୁ "ସଞ୍ଚିତ" କର୍ମ କୁହାଯାଏ । ଏହି ସଞ୍ଚିତରୁ ଯେଉଁ କର୍ମ, ଫଳଦେବାପାଇଁ ପ୍ରସ୍ତୁତ(ଉନ୍ମୁଖ) ହୋଇଗଲାଣି ଅର୍ଥାତ୍ ଜନ୍ମ, ଆୟୁ, ଏବଂ ଅନୁକୂଳ-ପ୍ରତିକୂଳ ପରିସ୍ଥିତି ରୂପରେ ପରିଣତ ହେବାପାଇଁ ସମ୍ମୁଖକୁ ଆସିଗଲାଣି, ତାହାକୁ ପ୍ରାରବ୍ଧ କର୍ମ କୁହାଯାଏ ।




କ୍ରିୟମାଣ କର୍ମ ଦୁଇ ପ୍ରକାରର- ଶୁଭ ଏବଂ ଅଶୁଭ । ଯେଉଁ କର୍ମ ଶାସ୍ତ୍ରାନୁସାରେ ବିଧି-ବିଧାନ ସହିତ କରାଯାଏ, ତାକୁ ଶୁଭକର୍ମ ,ଏବଂ କାମ, କ୍ରୋଧ, ଲୋଭ, ଆସକ୍ତି ଆଦିକୁ ନେଇ ଯେଉଁ ଶାସ୍ତ୍ର-ନିଷିଦ୍ଧ କର୍ମ କରାଯାଏ, ତାକୁ ଅଶୁଭ କର୍ମ କୁହନ୍ତି ।

ଶୁଭ ଅଥବା ଅଶୁଭ ପ୍ରତ୍ୟେକ କ୍ରିୟମାଣ କର୍ମର ଗୋଟିଏ ଫଳ ଅଂଶ ତିଆରି ହୁଏ, ଅନ୍ୟ ଏକ ସଂସ୍କାର ଅଂଶ । ଏ ଦୁଇଟି ଭିନ୍ନ-ଭିନ୍ନ ଅଟେ ।

କ୍ରିୟମାଣ କର୍ମର ଫଳ-ଅଂଶରେ ଦୁଇ ପ୍ରକାରର ଭେଦ ରହିଛି, ଯଥା- ଦୃଷ୍ଟ ଏବଂ ଅଦୃଷ୍ଟ । ଏଥି ମଧ୍ୟରୁ ଦୃଷ୍ଟରେ ମଧ୍ୟ ଦୁଇପ୍ରକାରର ଭେଦ ରହିଛି । ଯଥା- ତାତ୍କାଳିକ ଏବଂ କାଳାନ୍ତରିକ । ଯେପରି ଭୋଜନ କରିବା

* ଯାହାକିଛି ନୂତନ କର୍ମ ଏବଂ ସେଗୁଡ଼ିକର ସଂସ୍କାର ତିଆରି ହୁଏ, ସେ ସବୁ କେବଳ ମନୁଷ୍ୟ ଜନ୍ମରେ ହିଁ ହୋଇଥାଏ(ଗୀତା ୪ ।୧୨, ୧୫ ।୨); ପଶୁ-ପକ୍ଷୀ ଆଦି ଯୋନିରେ ନୁହେଁ । କାହିଁକି ନା, ସେ ଯୋନି ଗୁଡ଼ିକ କେବଳ କର୍ମ ଫଳ ଭୋଗିବାକୁ ହିଁ ମିଳିଛି ।

ଦ୍ୱାରା ଯେଉଁ ରସ ଉତ୍ପନ୍ନ ହୁଏ, ସୁଖ ହୁଏ, ପ୍ରସନ୍ନତା ହୁଏ, ଏବଂ ତୃପ୍ତି ହୁଏ- ଏହା ଦୃଷ୍ଟର **'ତାତ୍କାଳିକ'** ଫଳ, ଏବଂ ଭୋଜନର ପରିଣାମରେ ଆୟୁ, ଆରୋଗ୍ୟ, ଆଦି ବଢ଼ିବା- ଏହା ଦୃଷ୍ଟର **'କାଳାନ୍ତରିକ'** ଫଳ ଅଟେ । ଠିକ୍ ସେହିପରି ଯାହାର ଅଧିକ ମରିଚ (ଲଙ୍କା) ଖାଇବାର ଅଭ୍ୟାସ ଥାଏ, ସେ ଅଧିକ ଲଙ୍କାଯୁକ୍ତ ଖାଦ୍ୟ ଖାଇଲେ ସେଥିରେ ତାହାକୁ ପ୍ରସନ୍ନତା ସହିତ ସୁଖ ମଧ୍ୟ ହୁଏ ।ଏବଂ ଲଙ୍କାର ତୀକ୍ଷ୍ଣତା କାରଣରୁ ମୁଁହ ପୋଡ଼ିବା, ଆଖିରୁ ଏବଂ ନାକରୁ ପାଣି ବାହାରିବା, ମୁଁଣ୍ଡରୁ ଝାଳ ବାହାରିବା- ଏ ସବୁ 'ଦୃଷ୍ଟ'ର 'ତାତ୍କାଳିକ' ଫଳ । ଏବଂ କୁପଥ୍ୟ କାରଣରୁ ପରିଣାମରେ ପେଟବଥେଇବା ଓ ରୋଗ, ଦୁଃଖ ଆଦି ହେବା-ଏ ସବୁ ଦୃଷ୍ଟର "କାଳାନ୍ତରିକ" ଫଳ ଅଟେ । ଏହିଭଳି ଅଦୃଷ୍ଟ ମଧ୍ୟ ଦୁଇ ଭାଗରେ ବିଭକ୍ତ- ଲୌକିକ ଏବଂ ପାରଲୌକିକ । 'ମୁଁ ବଞ୍ଚିଥିବା ଅବସ୍ଥାରେ ମୋତେ ଫଳ ମିଳିଯାଉ' ଯଦିଓ ଏହିପରି ଭାବରଖି ଯଜ୍ଞ, ଦାନ, ବ୍ରତ, ତୀର୍ଥ , ମନ୍ତ୍ରଜପ ଆଦି ଶୁଭକର୍ମ ଗୁଡ଼ିକୁ ବିଧି-ବିଧାନରେ କରାଯାଏ, ଏବଂ ଉପରୋକ୍ତ କର୍ମରେ ଯଦି କୌଣସି ପ୍ରତିବନ୍ଧକ (ବାଧା-ବିଘ୍ନ) ନହୁଏ, ତେବେ ଇହଲୋକରେ ପୁତ୍ର, ଧନ ଯଶ, ପ୍ରତିଷ୍ଠା, ଅନୁକୂଳତା ଆଦି ପ୍ରାପ୍ତି ହୁଏ, ଏବଂ ରୋଗ, ନିର୍ଧନତା ଆଦି ପ୍ରତିକୂଳ ପରିସ୍ଥିତିର ନିବୃତ୍ତି ମଧ୍ୟ ହୁଏ- ଏହା ଦୃଷ୍ଟର **"ଲୌକିକ"** ଫଳ ଅଟେ* । ଏବଂ ମଲାପରେ ସ୍ୱର୍ଗାଦି ପ୍ରାପ୍ତି ଉଦ୍ଦେଶ୍ୟରେ ଯଥାର୍ଥ ବିଧି-ବିଧାନ ଓ ଶ୍ରଦ୍ଧା-ବିଶ୍ୱାସ ପୂର୍ବକ ଯେଉଁ ଯଜ୍ଞ, ଦାନ, ତପ, ବ୍ରତ, ଇତ୍ୟାଦି କରାଯାଏ, ତାହା ମରିବାପରେ ସ୍ୱର୍ଗାଦି ଉଚ୍ଚଲୋକକୁ ପ୍ରାପ୍ତି କରାଏ । ଏହା "ଅଦୃଷ୍ଟ"ର ପାରଲୌକିକ ଫଳ ଅଟେ । ସେହିଭଳି ଡକାୟତି କରିବା, ଚୋରି କରିବା, ମନୁଷ୍ୟ ହତ୍ୟା କରିବା ଆଦି ଅଶୁଭ କର୍ମ ସମୂହର ଫଳ ସ୍ୱରୂପ ଏଠାରେ କୈଦ, ଜୋରିମାନା, ଫାଶୀ ଆଦି ଭୋଗିବାକୁ ପଡ଼େ-ଏହା "ଅଦୃଷ୍ଟ"ର ଲୌକିକ ଫଳ ଅଟେ । ଏବଂ ଅତ୍ୟଧିକ ପାପହେତୁ ମୃତ୍ୟୁପରେ ନର୍କଭୋଗ କରିବା ଏବଂ ପଶୁ-ପକ୍ଷୀ , କୀଟ-ପତଙ୍ଗ ହୋଇ ଜନ୍ମହେବା-ଏହା ଅଦୃଷ୍ଟର ପାରଲୌକିକ ଫଳ ଅଟେ ।

---

* ଏଠାରେ ଦୃଷ୍ଟର ' କାଳାନ୍ତରିକ' ଫଳ ଏବଂ ଅଦୃଷ୍ଟର 'ଲୌକିକ ' ଫଳ -ସମାନ ଭଳି ମନେ ହେଉଥିଲେ ମଧ୍ୟ , ଏ ଦୁଇଟିରେ ପାର୍ଥକ୍ୟ ରହିଛି । ଯେଉଁ ଫଳ 'କାଳାନ୍ତରିକ' ଅଟେ ତାହା ସିଧା-ସଳଖ ମିଳେ, ପ୍ରାରବ୍ଧ ତିଆରି ହୋଇ ନୁହେଁ । କିନ୍ତୁ 'ଲୌକିକ' ଫଳ ପ୍ରାରବ୍ଧ ହୋଇ ମିଳେ ।

ପାପ-ପୁଣ୍ୟଦ୍ୱାରା ଏଠାରେ ମିଳୁଥିବା ଲୌକିକ ଏବଂ ପାରଲୌକିକ ଫଳ ବିଷୟରେ ଅନ୍ୟ ଏକ ବିଶେଷ କଥା ବୁଝିନେବା ଉଚିତ୍ କି, ଯେଉଁ ପାପକର୍ମର ଫଳ ଏଠାରେ କୈଦ, ଜୋରିମାନା, ନିନ୍ଦା, ଅପମାନ ଆଦି ରୂପରେ ଭୋଗ ହୋଇଯାଇଛି, ତାହା ମୃତ୍ୟୁପରେ ପୁନଃ ଭୋଗିବାକୁ ପଡ଼େନାହିଁ । କିନ୍ତୁ ବ୍ୟକ୍ତିର ପାପ କେତେ ମାତ୍ରାରେ ଥିଲା, ଏବଂ ତାର ଭୋଗ କେତେ ମାତ୍ରାରେ ହୋଇଛି, ଅର୍ଥାତ୍ ତାର ପାପକର୍ମର ଫଳ ସେ ପୂର୍ଣ୍ଣ ଭୋଗିଛି ନାଁ ଅଧାଭୋଗିଛି । ଏହାର ପୁରା ହିସାବ ମନୁଷ୍ୟ ପାଖରେ ନାହିଁ, ଏହାର ମାପ-ତୌଲ ମନୁଷ୍ୟକୁ ଅଜଣା, ପରନ୍ତୁ ଏ ବିଷୟରେ ଭଗବାନଙ୍କୁ ପୂର୍ଣ୍ଣରୂପେ ଜଣାଅଛି । ଅତଏବ ତାଙ୍କର କାନୁନ (ନ୍ୟାୟ) ଅନୁସାରେ ସେହି ପାପର ଫଳ ଏଠାରେ ଯେତେ କମ୍ ପରିମାଣରେ ଭୋଗ ହୋଇଛି, ସେତିକି ଇହଜନ୍ମରେ ବା ମରିବାପରେ ଅବଶ୍ୟ ଭୋଗିବାକୁ ପଡ଼ିବ । ସୁତରାଂ ମନୁଷ୍ୟକୁ ତିଳେମାତ୍ର ସନ୍ଦେହ କରିବା ଅନୁଚିତ୍ କି ମୋର ପାପ ତ କମ୍ ଥିଲା କିନ୍ତୁ ଦେଖ ମୋତେ ଦଣ୍ଡ ଅଧିକ ଭୋଗିବାକୁ ପଡ଼ିଲା, ଅଥବା ମୁଁ ତ ପାପ କରିନାହିଁ, କିନ୍ତୁ ମୋତେ ଦଣ୍ଡ ମିଳିଲା ! କାରଣ, ଏହା ସର୍ବଜ୍ଞ, ସର୍ବ ସୁହୃଦ, ସର୍ବସମର୍ଥ, ଭଗବାନଙ୍କ ବିଧାନ ଅଟେ । କେହି ପାପ କମ୍‌କରି ଦଣ୍ଡ ଅଧିକ ଭୋଗେନା । ଆମକୁ ଯେଉଁସବୁ ଦଣ୍ଡ ମିଳୁଛି ତାହା କୌଣସି ନାଁ କୌଣସି ପୂର୍ବ ପାପର ଫଳ ବୋଲି ବୁଝିବାକୁ ହେବ* । ସେହିଭଳି ଧନ-ସମ୍ପତ୍ତି, ମାନ, ଆଦର, ପ୍ରଶଂସା, ନିରୋଗତା ଆଦି ଅନୁକୂଳ ପରିସ୍ଥିତି ରୂପରେ ପୁଣ୍ୟ-କର୍ମର

---

* ଗୋଟିଏ ଶୁଣିଥିବା ଘଟଣା, କୌଣସି ଏକ ଗ୍ରାମରେ ଜଣେ ସଜ୍ଜନ ରହୁଥିଲେ । ତାଙ୍କ ଘର ସମ୍ମୁଖରେ ଏକ ବଣିଆର ଘର ଥିଲା । ବଣିଆ ଘରକୁ ସୁନାର ଯାତାୟାତ ସ୍ୱାଭାବିକ ଚାଲିଥାଏ, ଏବଂ ସେ ଅଳଙ୍କାର ପତ୍ର ଗଢ଼ି ଦେବା-ନେବା ମଧ୍ୟ କରେ, ଏହଭଳି ସେ ପଇସା ରୋଜଗାର କରେ । ଦିନକର ଘଟଣା ତା ପାଖରେ ଅଧିକ ସୁନା ଗଚ୍ଛିତ ହୋଇଗଲା । ରାତ୍ରିରେ ପହରା ଦେଉଥିବା ଚୌକିଦାର ଏ କଥା ଜାଣିପାରିଲା ଓ ବଣିଆକୁ ମାରି ସୁନା ବାକ୍ସଟିକୁ ଉଠାଇ ଆଣିଲା । ଠିକ୍ ସେହି ସମୟରେ ଆଗଘରେ ରହୁଥିବା ସଜ୍ଜନ ଜଣଙ୍କ ପରିଶ୍ରା କରିବାପାଇଁ ଉଠିଥିଲେ । ସେ ଚୌକିଦାରକୁ ଧରିପକାଇ କହିଲେ ତୁ ଏବାକ୍ସ କାହିଁକି ନେଇ ଯାଉଛୁ? ଏହା ଶୁଣି ଚୌକିଦାର କହାଲା, "ତୁ ଚୁପ ରହ, ପାଟି କରନା । ଏଥିରୁ ତୁ କିଛି ସୁନା ନେଇ ଯା ଏବଂ ମୁଁ କିଛି ନେଇଯାଉଛି ।" ସଜ୍ଜନ ଜଣଙ୍କ କହିଲେ,- "ମୁଁ କେମିତି ନେବି , ମୁଁ କଣ ଚୋର !" ଚୌକିଦାର କହିଲା-"ଦେଖ ମୋ କଥା ମାନିଯା, ନଚେତ୍ ଦୁଃଖ ଭୋଗିବୁ ।" ପରନ୍ତୁ ଏ ସମସ୍ତ କଥା ସଜ୍ଜନ ଜଣଙ୍କ ପ୍ରତ୍ୟାଖାନ କରିଦେଲେ । ସେଠୁ ଚୌକିଦାର ମୁଣ୍ଡରୁ ବାକ୍ସଟିକୁ ଓହ୍ଲାଇ ତଳେ ରଖିଦେଲା ଓ ହୁଇସିଲ୍ ଜୋରରେ ବଜାଇଦେଲା । ହୁଇସିଲ୍ ଶୁଣି ଅନ୍ୟ ଜାଗାରେ ରହୁଥିବା ଚୌକିଦାରମାନେ ମଧ୍ୟ ସେଠାରେ ଆସି ପହଞ୍ଚି ଗଲେ ଏବଂ ଚୋରିକରିଥିବା ଚୌକିଦାର ଜଣଙ୍କ ସମସ୍ତ ଲୋକଙ୍କ ସମେତ ଉପସ୍ଥିତ ଚୌକିଦାରଙ୍କୁ କହିଲା କି, ଏହି

ଫଳ ଏଠାରେ ଯେତିକି ଅଂଶରେ ଭୋଗିଲେ, ସେତିକି ଅଂଶରେ ପୁଣ୍ୟ ଏଠାରେ ତ ନଷ୍ଟ ହୋଇଗଲା । ଏବଂ ଯତିକି ବାକି ରହିଗଲା, ତାକୁ ପୁଣି ପରଲୋକରେ ପୁନଃ ଭଗକରାଯାଇ ପାରିବ । ଯଦି ପୁଣ୍ୟ କର୍ମର ପୁରାଫଳ ଏଠାରେ ଭୋଗ ହୋଇଯାଇଛି, ତେବେ ପୁଣ୍ୟ ଏଠାରେ ହିଁ ସମାପ୍ତ ହୋଇଗଲା ।

କ୍ରିୟମାଣ-କର୍ମର ସଂସ୍କାର-ଅଂଶକୁ ମଧ୍ୟ ଦୁଇ ଭାଗରେ ବିଭକ୍ତ କରାଯାଇଛି ଯଥା:- ଶୁଦ୍ଧ ବା ପବିତ୍ରସଂସ୍କାର ଏବଂ ଅଶୁଦ୍ଧ (ଅପବିତ୍ର) ସଂସ୍କାର । ଶାସ୍ତ୍ର-ବିହିତ କର୍ମ କରିବାଦ୍ୱାରା ଯେଉଁ ସଂସ୍କାର ପଡ଼େ, ତାହା ଶୁଦ୍ଧ (ପବିତ୍ର) ସଂସ୍କାର, ଏବଂ ଶାସ୍ତ୍ର, ନୀତି, ଲୋକ ମର୍ଯ୍ୟାଦାର ବିରୁଦ୍ଧ କର୍ମ କରିବାଦ୍ୱାରା ଯେଉଁ ସଂସ୍କାର ଜନ୍ମେ , ତାହା ଅଶୁଦ୍ଧ (ଅପବିତ୍ର) ସଂସ୍କାର ଅଟେ ।

---

ଚୋର ବଣିଆ ଘରୁ ବାକ୍ସ ନେଇ ପଳାଉଥଲା, ମୁଁ ଏହାକୁ ଧରିନେଇଛି । ଏହାଶୁଣି ଲୋକମାନେ ଘରେ ପଶି ଦେଖିଲେ ଯେ ବଣିଆ ମରି ପଡ଼ିଛି । ତାପରେ ଉକ୍ତ ସଜ୍ଜନଙ୍କୁ ଥାନାକୁ ଚାଲାଣ କରିଦିଆଗଲା, ତତ୍ ପଶ୍ଚାତ୍ କୋର୍ଟକୁ ମଧ୍ୟ । କୋର୍ଟରେ ଯଜ୍ଙ୍କ ସମ୍ମୁଖରେ ସଜ୍ଜନ କହିଲେ କି ମୁଁ ମାରିନାହିଁ, ସେହି ଚୌକିଦାର ମାରିଛି । ଚୌକିଦାର ମଧ୍ୟ ସେଠାରେ ଉପସ୍ଥିତ ଥିଲା , ସେ କହିଲା ନା-ନା ମୁଁ ମାରିନାହିଁ, ଏ ମାରିଛି । ମୁଁ ତ ନିଜେ ରାତ୍ରିରେ ଏହାକୁ ଧରିଛି ।

ମୋକଦମା ଚାଲିଲା । କେତେଦିନ ବିତିଯିବା ପରେ ଶେଷରେ ସଜ୍ଜନ ଜଣଙ୍କୁ ଫାଶୀର ଆଦେଶ ହେଲା । ଫାଶୀର ଆଦେଶ ଶୁଣି ସଜ୍ଜନ ଜଣଙ୍କ ଯଜ୍ଙ୍କ ସମ୍ମୁଖରେ ଚିତ୍କାର କରି କହିଲେ କି, " ଦେଖ ଏ ସବୁ ଅନ୍ୟାୟ ଚାଲିଛି, ବାସ୍ତବିକ୍ ସଂସାରରେ ଧର୍ମ ନାହିଁ, ଭଗବାନ ନାହାଁନ୍ତି ଇତ୍ୟାଦି । ମୁଁ ମାରିନାହିଁ ଅଥଚ ମୋତେ ମୃତ୍ୟୁଦଣ୍ଡ! ଯିଏ ମାରିଲା ସେ ନିର୍ଦୋଷରେ ମୁକ୍ତ;ତାକୁ ଜୋରିମାନା ମଧ୍ୟ ନାହିଁ ? ଏସବୁ ଅନ୍ୟାୟ- ଅନ୍ୟାୟ ଘୋର ଅନ୍ୟାୟ । ଏ କଥାର ପ୍ରଭାବ ଯଜ୍ଙ୍କ ହୃଦୟରେ ପଡ଼ିଲା! ସେ ଭାବିଲେ ବୋଧହୁଏ ସଜ୍ଜନ ଜଣଙ୍କ ସତ୍ୟ କହୁଛନ୍ତି । ଏହାର ବାସ୍ତବିକ ତଥ୍ୟ ଜାଣିବା ପାଇଁ ସେ ଏକ ଷଡ଼ଯନ୍ତ୍ର ରଚନା କଲେ ।-

ସକାଳ ହେବାମାତ୍ରେ ଜଣେଲୋକ ଖୁବ୍ ଜୋରରେ କାନ୍ଦି-କାନ୍ଦି ଆସି କହିଲା ଆଜ୍ଞା ମୋର ଭାଇଙ୍କୁ ହତ୍ୟା କରିଦିଆଯାଇଛି ଆପଣ ଏହାର ଯାଞ୍ଚ କରନ୍ତୁ । ସେଇଠୁ ଯଜ୍ ଚୌକିଦାରକୁ ଏବଂ ସଜ୍ଜନଙ୍କୁ କହିଲେ ଯାଅ ମୃତ ବ୍ୟକ୍ତିର ଶବ ଉଠାଇ ଆଣିବ, ଦୁଇଜଣ ସେ ଲୋକ ସାଥିରେ ଶବ ପାଖକୁ ଗଲେ ଶବ ଉପରେ ଏକ ରକ୍ତଲଗା ଧଳା ଲୁଗା ଘୋଡ଼ା ହୋଇଥିଲା, ଏମାନେ ଯେମିତି ଶବକୁ କାନ୍ଧକୁ ଉଠାଇଲେ, ଅନ୍ୟବ୍ୟକ୍ତି ଜଣଙ୍କ କୌଣସି ଏକ ଖବର ଦେବା ବାହାନାରେ ଆଗେ-ଆଗେ ଦୌଡ଼ି ପଳାଇଲେ । ବାଟରେ ଯାଉ ଯାଉ ଚୌକିଦାର ସଜ୍ଜନଙ୍କୁ କହିଲା, ଦେଖ୍ ସେଦିନ ଯଦି ତୁ ମୋ କଥା ମାନି ଯାଇଥାଆନ୍ତୁ, ତେବେ ତୋତେ ଫାଶୀ ହୋଇ ନଥାନ୍ତା ଓ ତୁ ସୁନା ମଧ୍ୟ ପାଇଯାଇଥାନ୍ତୁ । ଏବେ ଦେଖ୍ ସତ୍ୟର ଫଳ ମିଳିଲ୍ଲା ତ । ସଜ୍ଜନ ଜଣଙ୍କ କହିଲେ ମୁଁ ତ ସତ୍ୟ ପଥରେ ଅଛି, ଯଦି ଫାଶୀ ହୋଇଯିବ ତ ହୋଇଯିବ । ହତ୍ୟାକଲୁ ତୁ, ଓ ଫାଶୀ ଝୁଲିବି ମୁଁ- ଏହା କହି ସଜ୍ଜନ ଜଣଙ୍କ ଭୋ-ଭୋ ହୋଇ କାନ୍ଦି ଉଠିଲେ ଓ କହିଲେ କି, ଭଗବାନଙ୍କ ଦରବାରରେ ନ୍ୟାୟ ନାହିଁ !

ଖଟ ଉପରେ ଚିଆଇଁ ତଥ୍ୟ ଉନ୍ମୋଚନ ଉଦ୍ଦେଶ୍ୟରେ ଶୋଇଥିବା ଲୋକ ସବୁ ଶୁଣୁଥାଏ । ସେ ଦୁଇଜଣ ଯଜ୍ଙ୍କ ସମ୍ମୁଖରେ ଖଟିଆ ରଖିଦେବାମାତ୍ରେ ଖଟ ଉପରୁ ସେ ଲୋକଟି ଝାଡ଼ି-ଝୁଡ଼ି ହୋଇ

ଶୁଦ୍ଧ ଓ ଅଶୁଦ୍ଧ- ଏଦୁଇଟି ସଂସ୍କାରକୁ ନେଇ ମନୁଷ୍ୟର ସ୍ୱଭାବ (ପ୍ରକୃତି) ଗଠିତ ହୁଏ । ଉକ୍ତ ସଂସ୍କାର ମଧ୍ୟରୁ ଅଶୁଦ୍ଧ ଅଂଶକୁ ପୂର୍ଣ୍ଣଭାବେ ନଷ୍ଟ କରିଦେବା ଦ୍ୱାରା ସ୍ୱଭାବ ଶୁଦ୍ଧ, ନିର୍ମଳ ଓ ପବିତ୍ର ହୋଇଥାଏ, କିନ୍ତୁ ଯେଉଁ ପୂର୍ବକୃତ କର୍ମରୁ ସ୍ୱଭାବ ତିଆରି ହୋଇଛି, ସେହି କର୍ମ ସମୂହର ଭିନ୍ନତା

---

ଉଠିପଡ଼ିଲା, ଯଜ୍ ପଚାରିବାରୁ ସେ ସତ୍ୟ-ସତ୍ୟ କହିଦେଲା କି , ଚୌକିଦାର ଏଇଆ କହିଲା ଏବଂ ସଜ୍ଜନ ଏଇଆ କହିଲେ । ଏକଥା ଶୁଣି ଯଜ୍‌ଙ୍କୁ ବହୁତ ଆଶ୍ଚର୍ଯ୍ୟ ଲାଗିଲା । ସେତେବେଳକୁ ଚୌକିଦାରର ମଧ୍ୟ ହାଲକା ସୁଖିଗଲାଣି । ଚୌକିଦାରକୁ ସଙ୍ଗେ-ସଙ୍ଗେ ହାତକଡ଼ି ପକାଇ ଜେଲଖାନାକୁ ନିଆଗଲା, କିନ୍ତୁ ଯଜ୍‌ଙ୍କ ମନରେ ସନ୍ତୋଷ ହେଲା ନାହିଁ! ସେ ସଜ୍ଜନ ଜଣଙ୍କୁ ଏକାନ୍ତ ସ୍ଥାନକୁ ଡ଼ାକିନେଇ ପଚାରିଲେ କି, "ମୁଁ ଏ ତଦନ୍ତରୁ ପୂର୍ଣ୍ଣରୂପେ ଜାଣିଲି ଯେ ତୁମେ ନିର୍ଦୋଷ । ନିର୍ଦୋଷ ଜାଣି ମଧ୍ୟ ତୁମକୁ ଫାଶୀ ଭୋଗିବାକୁ ପଡ଼ିବ, ଯେହେତୁ ଆଦେଶ ହୋଇଯାଇଛି । ତେଣୁ ତୁମେ ମରିବା ପୂର୍ବରୁ ସତ କଥା କହିଦିଅ, ତୁମେ ଏ ଜନ୍ମରେ କାହାକୁ ମାରିଛ କି?" ତାପରେ ସଜ୍ଜନ ଜଣଙ୍କ ସତ୍ କଥା କହିଲେ- "ବହୁତ ଦିନର ଘଟଣା, ଜଣେ ଦୃଷ୍ଟ ଲୋକ ମୁଁ ନଥିବା ଅବସ୍ଥାରେ ମୋ ସ୍ତ୍ରୀ ପାଖକୁ ଯିବା-ଆସିବା କରୁଥିଲା । ମୁଁ ମୋର ସ୍ତ୍ରୀକୁ ଏବଂ ସେ ଦୁଷ୍ଟକୁ ଏକାନ୍ତରେ ବହୁତ ବୁଝାଇଲି, କିନ୍ତୁ ସେମାନେ ମାନିଲେ ନାହିଁ । ଦିନେ ରାତ୍ରିରେ ସେ ଘରେ ଥିଲା , ଠିକ୍ ସେହି ସମୟରେ ଅଚାନକ ମୁଁ ଆସିଗଲି । ମୋର କ୍ରୋଧ ହଠାତ୍ ବହୁତ ବଢ଼ି ଯିବାରୁ ମୁଁ ଖଣ୍ଡାରେ ତାର ଗଳା କାଟିଦେଲି । ଏବଂ ଘର ପଛପଟେ ଥିବା ନଦୀରେ ଭସାଇଦେଲି । ଏହି ଘଟଣା କେହିହେଲେ ଜାଣି ନାହାନ୍ତି ।ଏହା ଶୁଣି ଯଜ୍ କହିଲେ, ତୁମକୁ ବର୍ତ୍ତମାନ ଯେଉଁ ଫାଶୀ ହେବ ତାହା ସେହି ପୂର୍ବକୃତ ପାପର ଫଳ । ମୁଁ ଭାବିଲି କି ଆଜି ପର୍ଯ୍ୟନ୍ତ ତ ମୁଁ କାହାଠାରୁ କୌଣସି ଲାଞ୍ଚ ନେଇନାହିଁ, କୌଣସି ବେଇମାନୀ ମଧ୍ୟ କରି ନାହିଁ, ପୁଣି ମୋ ହାତରେ ଏହି ଫାଶୀ ଆଦେଶ ଲେଖାହେଲା କିପରି ? ବର୍ତ୍ତମାନ ମୁଁ ସନ୍ତୋଷ ହେଲି । ତୁମକୁ ସେହି ପୂର୍ବପାପର ଫଳ ସ୍ୱରୂପ ଫାଶୀ ଦିଆଯିବ ଓ ଚୌକିଦାରକୁ ମଧ୍ୟ ଅଲଗା ଫାଶୀ ଦିଆଯିବ ।

ସେହି ସଜ୍ଜନ ଜଣଙ୍କ ଚୋର ଚୌକିଦାରକୁ ଧରି ନିଜର କର୍ତ୍ତବ୍ୟ ପାଳନ କରିଥିଲେ । ତଥାପି ତାଙ୍କୁ ଯେଉଁ ଦଣ୍ଡ ମିଳିଲା, ତାହା ତାଙ୍କ କର୍ତ୍ତବ୍ୟ ପାଳନର ଫଳ ନୁହେଁ, ବରଂ ପ୍ରଥମେ ଯେଉଁ ହତ୍ୟା କରିଥିଲେ, ସେହି ହତ୍ୟାର ଫଳ ଅଟେ । କାରଣ, ମନୁଷ୍ୟକୁ ନିଜର ରକ୍ଷା କରିବାର ଅଧିକାର ଅଛି, ମାରିବାର ଅଧିକାର ନାହିଁ । ମାରିବାର ଅଧିକାର ରକ୍ଷକ କ୍ଷତ୍ରିୟର, ବା ରାଜାଙ୍କର । ଅତଏବ କର୍ତ୍ତବ୍ୟ ପାଳନ କରିଥିବାରୁ ସେହି ପାପର (ହତ୍ୟାର) ଫଳ ତାହାଙ୍କୁ ଜୀବିତ ଅବସ୍ଥାରେ ମିଳିଗଲା ଏବଂ ସେ ପର ଲୋକର ଭୟଙ୍କର ଦଣ୍ଡରୁ ମୁକ୍ତ ହୋଇଗଲେ । କାରଣ ଏହିକି, ଇହଲୋକରେ ଯେଉଁ ଦଣ୍ଡ ମିଳେ ତାହା ଅଳ୍ପ ପରିମାଣରେ ମିଳେ ଏବଂ ଅଳ୍ପରେ ମଧ୍ୟ ଶୁଦ୍ଧି ହୋଇଥାଏ । ଅନ୍ୟଥା ପରଲୋକରେ ବଡ଼ ଭୟଙ୍କର ଦଣ୍ଡ(ସୁଧ ସହିତ) ଭୋଗିବାକୁ ପଡ଼େ ।

ଏହି କାହାଣୀରୁ ସିଦ୍ଧ ହେଲାକି, ମନୁଷ୍ୟ ପୂର୍ବରୁ କରିଥିବା ପାପର ଫଳ କେବେ ମିଳିବ- ଏହାର କିଛି ଠିକଣା ନାହିଁ । ଭଗବାନଙ୍କର ବିଧାନ ବିଚିତ୍ର ଅଟେ । ଯେ ପର୍ଯ୍ୟନ୍ତ ପୂର୍ବର ପୁଣ୍ୟ ପ୍ରବଳଥାଏ ସେ ପର୍ଯ୍ୟନ୍ତ ଉଗ୍ର ପାପର ଫଳ ମଧ୍ୟ ତତକ୍ଷଣାତ୍ ମିଳେନାହିଁ । କିନ୍ତୁ ଯେତେବେଳେ ପୂର୍ବରୁ କରିଥିବା ପୁଣ୍ୟ ଫଳ ଶେଷ ହୋଇଯାଏ, ସେତେବେଳେ ପାପ ଭୋଗର ପାଳି ଆସେ ଓ ତାହାର ଫଳ ଅବଶ୍ୟ ଭୋଗିବାକୁ ପଡ଼େ, ତାହା ଏଜନ୍ମରେ ହେଉ ବା ଜନ୍ମାନ୍ତରରେ ।

କାରଣରୁ ଜୀବନ୍ମୁକ୍ତ ମହାପୁରୁଷଙ୍କ ସ୍ୱଭାବରେ ମଧ୍ୟ ଭିନ୍ନତା ରହିଥାଏ । ସ୍ୱଭାବର ଭିନ୍ନତା ଯୋଗୁଁ ତାଙ୍କଦ୍ୱାରା ବିଭିନ୍ନ କର୍ମର ପରିଲକ୍ଷିତ ହୋଇଥାଏ । ପରନ୍ତୁ ସେ କର୍ମ ଦୋଷାବହ ହୁଏନାହିଁ, ବରଂ ସର୍ବଥା ଶୁଦ୍ଧ ହୁଏ ଏବଂ ସେହି କର୍ମଦ୍ୱାରା ଜଗତର କଲ୍ୟାଣ ହୁଏ ।

ସଂସ୍କାର ଅଂଶରୁ ଯେଉଁ ସ୍ୱଭାବ ତିଆରି ହୁଏ, ତାହା ଏକ ଦୃଷ୍ଟିକୋଣରୁ ମହାନ୍ ପ୍ରବଳ ହୋଇଥାଏ,-'**ସ୍ୱଭାବୋ ମୂର୍ଦ୍ଧ୍ନିବର୍ତ୍ତତେ**' । ସୁତରାଂ ତାକୁ ଦୂରେଇ ହୁଏନାହିଁ* । ଏହିଭଳି ବ୍ରାହ୍ମଣ, କ୍ଷତ୍ରିୟ, ଆଦି ବର୍ଣ୍ଣମାନଙ୍କର ଯେଉଁ ସ୍ୱଭାବ ରହିଛି, ସେଥିରେ କର୍ମ କରିବାର ପ୍ରାଧାନ୍ୟ ରହିଥାଏ । ଏଥିଯୋଗୁଁ ଭଗବାନ୍ ଅର୍ଜୁନଙ୍କୁ କହିଲେ କି, ଯେଉଁ କର୍ମକୁ ତୁ ମୋହବଶ ହୋଇ କରିବାକୁ ଚାହୁଁନାହୁଁ, ତାକୁ ମଧ୍ୟ ତୁ ସ୍ୱାଭାବଜକର୍ମର ବଶିଭୂତହୋଇ ଅବଶ୍ୟ କରିବୁ (ଗୀତା୧୮ ।୬୦) ।

ବର୍ତ୍ତମାନ ବିଚାରୋପଯୋଗୀ ଏକ କଥା ଦୃଷ୍ଟିଗୋଚରକୁ ଆସୁଛି କି, ଏକ ପକ୍ଷରେ ତ ସ୍ୱଭାବର ମହାନ୍ ପ୍ରବଳତା ଯୋଗୁଁ ତାକୁ କେହି ଛାଡ଼ି ପାରିବେ ନାହିଁ, ଅପରପକ୍ଷେ ମନୁଷ୍ୟ-ଜନ୍ମରେ ଉଦ୍ୟୋଗର ମହାନ୍ ପ୍ରବଳତା ମଧ୍ୟ ଅଛି । ଯାହାଦ୍ୱାରା ମନୁଷ୍ୟ ସବୁକିଛି କରିବାରେ ସ୍ୱତନ୍ତ୍ର ଅଟେ । ଅତଏବ ଏ ଦୁଇଟି ମଧ୍ୟରେ କାହାର ବିଜୟ ଏବଂ କାହାର ପରାଜୟ ହେବ? ଏଥିରେ ବିଜୟ ପରାଜୟର କଥା କିଛି ନାହିଁ । ଦୁଇଜଣ ନିଜ-ନିଜ ସ୍ଥାନରେ ହିଁ ପ୍ରବଳ ଅଟନ୍ତି, ପରନ୍ତୁ ଏଠାରେ ସ୍ୱଭାବ ନ ଛାଡ଼ିବା ବିଷୟରେ ଯେଉଁ କଥା କୁହାଯାଇଛି, ତାହା ହେଉଛି ଜାତି-ବିଶେଷର ସ୍ୱଭାବ । ଜୀବ ଯେଉଁ ବର୍ଣ୍ଣରେ ଜନ୍ମିଛି, ପିତା-ମାତାଙ୍କର ଯେମିତିକା ରଜ ବୀର୍ଯ୍ୟ ଥିଲା, ସେହି ଅନୁଯାୟୀ ଯେଉଁପରି ସ୍ୱଭାବ ତିଆରି ହୋଇଛି, ତାକୁ କେହି ବଦଳାଇ

---

ଅବଶ୍ୟମେବ ଭୋକ୍ତବ୍ୟଂ କୃତଂ କର୍ମ ଶୁଭାଶୁଭମ୍ ।
ନାଭୁକ୍ତଂ କ୍ଷୀୟତେ କର୍ମ ଜନ୍ମକୋଟିଶତୈରପି ।।
*ବ୍ୟାଘ୍ରସ୍ତୁଷ୍ୟତି କାନନେ ସୁଗହନାଂ ସିଂହୋ ଗୁହାଂ ସେବତେ
ହଂସୋ ବାଞ୍ଛତି ପଦ୍ମିନୀଂ କୁସୁମିତାଂ ଗୃଧ୍ରଃ ଶ୍ମଶାନେ ସ୍ଥଳେ ।
ସାଧୁଃ ସତ୍କୃତିସାଧୁମେବ ଭଜତେ ନୀଚୋଽପି ନୀଚଂ ଜନଂ
ଯା ଯସ୍ୟ ପ୍ରକୃତିଃ ସ୍ୱଭାବଜନିତା କେନାପି ନ ତ୍ୟଜ୍ୟତେ ।।

ବ୍ୟାଘ୍ର ଘନ ଜଙ୍ଗଲରେ ସନ୍ତୋଷରେ ରୁହେ, ସିଂହ ଗହନ ଗୁମ୍ଫା ପସନ୍ଦ କରେ, ହଂସ ପଦ୍ମ ପ୍ରସ୍ଫୁଟିତ ପୁଷ୍କରିଣୀ ଚାହେଁ, ଗୃଧ୍ରଃ (ଶାଗୁଣା) ଶ୍ମଶାନ-ଭୂମିରେ ରହିବାକୁ ପସନ୍ଦ କରେ, ସଜ୍ଜନ ପୁରୁଷ ପବିତ୍ର ଆଚରଣ ଯୁକ୍ତ ସଜ୍ଜନ ପୁରୁଷଙ୍କ ସହିତ ଏବଂ ନୀଚ ପୁରୁଷ ନୀଚ ଲୋକଙ୍କ ସହିତ ରହିବାକୁ ପସନ୍ଦ

ପାରିବେନାହିଁ । ଅତଏବ ସେହି ସ୍ୱଭାବ ଦୋଷୀ ନୁହେଁ, ବରଂ ନିର୍ଦ୍ଦୋଷୀ ଅଟେ । ଯଥା- ବ୍ରାହ୍ମଣ, କ୍ଷତ୍ରିୟ ଆଦି ବର୍ଣ୍ଣ ମାନଙ୍କର ଯେମିତିକା ସ୍ୱଭାବ ଅଛି, ସେ ସ୍ୱଭାବ ବଦଳି ପାରିବ ନାହିଁ ଏବଂ ତାକୁ ବଦଳାଇବାର କୌଣସି ଆବଶ୍ୟକତା ନାହିଁ ତଥା ଶାସ୍ତ୍ର ମଧ୍ୟ ତାକୁ ବଦଳାଇବା ପାଇଁ କହୁନାହିଁ । ପରନ୍ତୁ ସେହି ସ୍ୱଭାବରେ ଯେଉଁ ଅଶୁଦ୍ଧ-ଅଂଶ (ରାଗ-ଦ୍ୱେଷ) ଅଛି, ତାକୁ ଦୂରେଇ ଦେବାର ସାମର୍ଥ୍ୟ ଭଗବାନ୍ ମନୁଷ୍ୟକୁ ଦେଇଛନ୍ତି । ସୁତରାଂ ଯେଉଁ ଦୋଷରୁ ମନୁଷ୍ୟର ସ୍ୱଭାବ ଅଶୁଦ୍ଧ ହୋଇଯାଇଛି, ସେହି ଦୋଷ ଗୁଡ଼ିକୁ ହଟାଇ ମନୁଷ୍ୟ ସ୍ୱତନ୍ତ୍ରତା ପୂର୍ବକ ନିଜ ସ୍ୱଭାବକୁ ଶୁଦ୍ଧ ଓ ପବିତ୍ର କରିପାରିବ । ମନୁଷ୍ୟ ଚାହିଁଲେ କର୍ମଯୋଗ ଦୃଷ୍ଟିରୁ ନିଜର ପ୍ରଯତ୍ନ ଦ୍ୱାରା ରାଗ-ଦ୍ୱେଷକୁ ତ୍ୟାଗକରି ନିଜର ସ୍ୱଭାବ ଶୁଦ୍ଧ କରି ପାରିବ* ଏବଂ ଭକ୍ତିଯୋଗ ଦୃଷ୍ଟିରୁ ମଧ୍ୟ ସର୍ବଥା ଭଗବାନଙ୍କର ଶରଣ ହୋଇ ନିଜ ସ୍ୱଭାବକୁ ଶୁଦ୍ଧ କରିଦେଇ ପାରିବ +। ଏହି କ୍ରମରେ ପ୍ରକୃତି (ସ୍ୱଭାବ) ର ପ୍ରବଳତା ଏବଂ ମନୁଷ୍ୟର ସ୍ୱତନ୍ତ୍ରତା ମଧ୍ୟ ସିଦ୍ଧ ହେଲା । ତାତ୍ପର୍ଯ୍ୟ ଏହିକି ଶୁଦ୍ଧ ସ୍ୱଭାବକୁ ସ୍ଥାୟୀ ରଖିବାରେ ପ୍ରକୃତିର ପ୍ରବଳତା ଏବଂ ଅଶୁଦ୍ଧ ସ୍ୱଭାବକୁ ଦୂରେଇବାରେ ମନୁଷ୍ୟର ସ୍ୱତନ୍ତ୍ରତା ରହିଛି ।

ଯେମିତି, ଲୁହାରେ ତିଆରି ଖଣ୍ଡାକୁ ପାରସରେ ଛୁଆଁଇ ଦେଲେ ଖଣ୍ଡା ସୁନାପାଲଟି ଯାଏ, କିନ୍ତୁ ତାହାର ମାର, ଧାର ଏବଂ ଆକାର-ଏ ୩ଟି

---

କରନ୍ତି । ଏହା ସତ୍ୟ ଯେ, ସ୍ୱଭାବରୁ ଜନ୍ମିଥିବା ଯାହାର ଯେମିତି ପ୍ରକୃତି ଥାଏ, ସେହି ପ୍ରକୃତିକୁ କେହି ଛାଡ଼ନ୍ତି ନାହିଁ ।

* ରାଗ- ଦ୍ୱେଷର ଅର୍ଥ ହେଉଛି ପ୍ରତ୍ୟେକ ଇନ୍ଦ୍ରିୟ (ଶ୍ରୋତ୍ର, ତ୍ୱକ୍, ନେତ୍ର, ରସନା ଏବଂ ଘ୍ରାଣ) ର ପ୍ରତ୍ୟେକ ବିଷୟ (ଶବ୍ଦ, ସ୍ପର୍ଶ, ରୂପ, ରସ , ଗନ୍ଧ)ରେ ମନୁଷ୍ୟର ଅନୁକୂଳତା ଓ ପ୍ରତିକୂଳତା ମାନ୍ୟତାରେ ରାଗ- ଦ୍ୱେଷ ସ୍ଥିତ ଥାଏ । ଇନ୍ଦ୍ରିୟର ବିଷୟରେ ଅନୁକୂଳତା ଭାବ ହେବାଦ୍ୱାରା ବା ସୁଖ ଭୋଗର ଇଚ୍ଛା ରହିବା ଦ୍ୱାରା ଏଠାରେ ରାଗ ଉତ୍ପନ୍ନ ହେଲା ବୋଲି ଜାଣିବା । ରାଗ ଶବ୍ଦର ଅର୍ଥ କ୍ରୋଧନୁହେଁ । ସେହିଭଳି ପ୍ରତ୍ୟେକ ଇନ୍ଦ୍ରିୟର ପ୍ରତ୍ୟେକ ବିଷୟରେ ପ୍ରତିକୂଳତା ଭାବ ହେବା ବା ଘୃଣା ଭାବ ହେବା- ଏହା ଦ୍ୱେଷ ଅଟେ । (ଏହାର ବିଶଦ୍ ବ୍ୟାଖ୍ୟା ଶ୍ରୀମଦ୍ଭଗବତ୍ ଗୀତା ସାଧକ ସଂଜୀବନି ହିନ୍ଦି ଟୀକାର ଅଧ୍ୟାୟ୩ ଶ୍ଳୋକ ସଂ ୩୪ ଦେଖନ୍ତୁ) ।

ଇନ୍ଦ୍ରିୟସ୍ୟେନ୍ଦ୍ରିୟସ୍ୟାର୍ଥେ ରାଗଦ୍ୱେଷୌ ବ୍ୟବସ୍ଥିତୌ ।
ତୟୋର୍ନ ବଶମାଗଚ୍ଛେତ୍ତୌ ହ୍ୟସ୍ୟ ପରିପନ୍ଥିନୌ ।।

+ତମେବ ଶରଣଂ ଗଚ୍ଛ ସର୍ବଭାବେନ ଭାରତ ।
ତତ୍ପ୍ରସାଦାତ୍ପରାଂ ଶାନ୍ତିଂ ସ୍ଥାନଂ ପ୍ରାପ୍ସ୍ୟସି ଶାଶ୍ୱତମ୍ ।।
(ଗୀତା ୧୮ ।୬୨)

ବଦଳେନାହିଁ । ଯେପରି ଲୁହାକୁ ସୁନା କରିବାରେ ପାରସର ପ୍ରଧାନତା ଏବଂ ମାର, ଧାର, ଆକାରରେ ଖଣ୍ଡାର ପ୍ରଧାନତା ରହିଛି । ଠିକ୍ ସେହିପରି ଯେଉଁ ମାନେ ନିଜର ସ୍ୱଭାବକୁ ପରମ ଶୁଦ୍ଧ କରିନେଇଛନ୍ତି, ତାଙ୍କର କର୍ମ ମଧ୍ୟ ସର୍ବଥା ଶୁଦ୍ଧ ହୋଇଥାଏ । ପରନ୍ତୁ ସ୍ୱଭାବ ଶୁଦ୍ଧ ହେଲେ ମଧ୍ୟ ବର୍ଣ୍ଣ, ଆଶ୍ରମ, ସମ୍ପ୍ରଦାୟ, ସାଧନ-ପଦ୍ଧତି, ମାନ୍ୟତା ଆଦି ଅନୁସାରେ ପରସ୍ପର ମଧ୍ୟରେ ସେମାନଙ୍କର କର୍ମରେ ଭିନ୍ନତା ରହେ । ଯଥା-କୌଣସି ବ୍ରାହ୍ମଣଙ୍କୁ ତତ୍ତ୍ୱବୋଧ ହେବାପରେ ମଧ୍ୟ ଖାଦ୍ୟ, ପେୟ ଆଦିରେ ସେ ପବିତ୍ରତା ରଖନ୍ତି ଏବଂ ଭୋଜନ ନିଜ ହାତରେ ତିଆରି କରି ଗ୍ରହଣ କରିଥାନ୍ତି, କାହିଁକିନା ତାଙ୍କର ସ୍ୱଭାବରେ ପବିତ୍ରତା ଆସିଯାଇଥାଏ । ପରନ୍ତୁ କୌଣସି ହରିଜନ ଆଦି ସାଧାରଣ ବର୍ଣ୍ଣର ଲୋକଙ୍କୁ ତତ୍ତ୍ୱବୋଧ ହେବାପରେ ମଧ୍ୟ ତାଙ୍କର ଖାଦ୍ୟ, ପେୟ ଆଦିରେ ସେ ପବିତ୍ରତା ରଖନ୍ତି ନାହିଁ । ଏବଂ ଅନ୍ୟର ଅଇଁଠା ମଧ୍ୟ ଖାଇଯାନ୍ତି । କାରଣ କି, ପୂର୍ବରୁ ତାଙ୍କ ସ୍ୱଭାବ ସେହିପରି ହୋଇଯାଇଛି । ତେଣୁ ଏପରି ସ୍ୱଭାବ ତାଙ୍କପାଇଁ କ୍ଷତିକାରକ ହେବନାହିଁ ।

ଜୀବର ଅସତ୍ (ସଂସାର) ସହିତ ସମ୍ବନ୍ଧ ଯୋଡ଼ିବାର ସ୍ୱଭାବ ଅନାଦି କାଳରୁ ରହିଆସିଛି, ଯେଉଁଥିପାଇଁ ଆଜି ସେ ଜନ୍ମ-ମରଣ ଚକ୍ରରେ ପଡ଼ିଛି ଏବଂ ଉଚ୍ଚ-ନୀଚ ଯୋନୀରେ ଜନ୍ମ ଗ୍ରହଣ କରୁଛି । ସେ ଯଦି ଚାହିଁବ, ତେବେ ତାର ସ୍ୱଭାବକୁ ମଧ୍ୟ ସେ ଶୁଦ୍ଧ କରିପାରିବ । ଅର୍ଥାତ୍ ସେଥିରେ ଯେଉଁ କାମନା, ମମତା, ଓ ଏକାତ୍ମତା ରହିଛି; ସେ ସବୁକୁ ମନୁଷ୍ୟ ଛାଡ଼ିଦେଇ ପାରିବ । ଏକାତ୍ମତାକୁ ହଟାଇ ଦେବାପରେ ଯେଉଁ ସ୍ୱଭାବ ରହେ, ସେ ସ୍ୱଭାବ ଦୋଷୀ ନୁହେଁ, ବରଂ ତାହା ପବିତ୍ର ସ୍ୱଭାବ । ତେଣୁ ସେହି ସ୍ୱଭାବକୁ ଦୂରେଇ ହେବନାହିଁ ଓ ଦୂରେଇବାର କୌଣସି ଆବଶ୍ୟକତା ମଧ୍ୟ ନାହିଁ ।

ଯେତେବେଳେ ମନୁଷ୍ୟ ଅହଂକାରର ଆଶ୍ରୟ ଛାଡ଼ି ସର୍ବଥା ଭଗବାନଙ୍କ ଚରଣାରବିନ୍ଦରେ ଶରଣ ନେଇଯାଏ, ସେତେବେଳେ ତାର ସ୍ୱଭାବ ଶୁଦ୍ଧ ହୋଇଯାଏ; ଯେମିତି ଲୁହା ପାରସର ସ୍ପର୍ଶରେ ଖାଣ୍ଟି ସୁନା ରେ ପରିଣତ ହୁଏ । ସ୍ୱଭାବ ଶୁଦ୍ଧ ହେବାପରେ ପୁଣି ସେ ସ୍ୱଭାବଜ କର୍ମ କଲେ ମଧ୍ୟ ଦୋଷୀ ବା ପାପୀ ହୁଏନାହିଁ(ଗୀତା ୧୮ ।୪୭) । ଭଗବାନଙ୍କ ପାଦପଦ୍ମରେ ପୂର୍ଣ୍ଣରୂପେ ଶରଣାଗତ ହୋଇଯିବା ପରେ ପ୍ରକୃତି ସହିତ ଭକ୍ତର କୌଣସି ସମ୍ବନ୍ଧ ରହେନାହିଁ, ଏବଂ ଭକ୍ତ ଜୀବନରେ ଭଗବାନଙ୍କର ସ୍ୱଭାବ ଅବତରିତ

ହୋଇଯାଏ । ଭଗବାନ୍ ମାତ୍ର ପ୍ରାଣୀଙ୍କର ସୁହୃଦ ଅଟନ୍ତି-'**ସୁହୃଦଂ ସର୍ବଭୂତାନାଂ**' (ଗୀତା୫ ।୨୯) । ଏଣୁ ଭକ୍ତ ମଧ୍ୟ ସମସ୍ତ ପ୍ରାଣୀଙ୍କର ସୁହୃଦ ହୋଇଯାଏ-'**ସୁହୃଦଂ ସର୍ବ ଦେହିନାମ୍**'(ଶ୍ରୀ ମଭାଗ-୩ । ୨୫ । ୨୧ ।) ।

ସେହିପରି କର୍ମଯୋଗ ଦୃଷ୍ଟିରୁ ମନୁଷ୍ୟ ଯେତେବେଳେ ରାଗ-ଦ୍ୱେଷକୁ ଦୂରେଇ ଦିଏ, ସେତେବେଳେ ତାର ସ୍ୱଭାବ ଶୁଦ୍ଧ ହୋଇଯାଏ ।ଯଦ୍ୱାରା ନିଜର ସ୍ୱାର୍ଥ ଭାବ ଦୂରହୋଇ, କେବଳ ଦୁନିଆଁର ସ୍ୱାର୍ଥ (ହିତ) ଭାବ ସ୍ୱତଃ ଆସିଯାଏ । ଯେଉଁଭଳି ଭଗବାନଙ୍କର ସ୍ୱଭାବ ପ୍ରାଣୀମାନଙ୍କର ହିତ କରିବା, ସେହିଭଳି ଭକ୍ତର ସ୍ୱଭାବ ମଧ୍ୟ ପ୍ରାଣୀମାନଙ୍କର ହିତପାଇଁ ହୋଇଯାଏ । ଯେତେବେଳେ ତାର ସମସ୍ତ ଚେଷ୍ଟା ମାତ୍ରପ୍ରାଣୀଙ୍କର ହିତପାଇଁ ହୁଏ, ସେତେବେଳେ ଭଗବାନଙ୍କ ସର୍ବ ସୁହୃତା-ଶକ୍ତି ସହିତ ଭକ୍ତର ଏକତା ହୋଇଯାଏ । ତାର ସେହି ସ୍ୱଭାବରେ ଭଗବାନଙ୍କର"**ସୁହୃତା**"-ଶକ୍ତି କାର୍ଯ୍ୟ କରିବାରେ ଲାଗିଯାଏ ।

ବାସ୍ତବରେ ଭଗବାନଙ୍କର ସେହି ସର୍ବ ସୁହୃତା-ଶକ୍ତି ପ୍ରତ୍ୟେକ ମନୁଷ୍ୟଙ୍କ ପାଇଁ ସମାନ ଭାବେ ଖୋଲା ଯାଇଛି, ପରନ୍ତୁ କେବଳ ନିଜର ଅହଂକାର ଏବଂ ରାଗ-ଦ୍ୱେଷ କାରଣରୁ ହିଁ ସେହି ଶକ୍ତିରେ ବାଧା ଲାଗିଯାଉଛି, ଯଦ୍ୱାରା ସେ ଶକ୍ତି କାମ କରୁନାହିଁ । ମହାପୁରୁଷଙ୍କଠାରେ ଅହଂକାର(ବ୍ୟକ୍ତିତ୍ୱ) ଏବଂ ରାଗ-ଦ୍ୱେଷନଥାଏ, ସୁତରାଂ ସେମାନଙ୍କ ହୃଦୟରେ ଏହି ଶକ୍ତି କାମକରେ ।




ଅନେକ ମନୁଷ୍ୟ-ଜନ୍ମରେ କରିଥିବା କର୍ମ(ଫଳ-ଅଂଶ ଏବଂ ସଂସ୍କାର-ଅଂଶ) ଅନ୍ତଃକରଣରେ ସଂଗୃହିତ ହୋଇ ରହିଥାଏ, ତାହାକୁ ହିଁ ସଂଚିତ କର୍ମ କୁହନ୍ତି । ସେଥିମଧ୍ୟରୁ ଫଳ-ଅଂଶରୁ ତ "ପ୍ରାରବ୍ଧ" ତିଆରି ହୁଏ ଏବଂ ସଂସ୍କାର-ଅଂଶରୁ "ସ୍ଫୁରଣା" । ସେହି ସ୍ଫୁରଣା ମଧ୍ୟରୁ ବର୍ତ୍ତମାନରେ କରାଯାଇଥିବା ଯେଉଁସବୁ ନୂତନ କ୍ରିୟମାଣ କର୍ମ 'ସଂଚିତରେ'

ଭର୍ତ୍ତିହୋଇଛି, ପ୍ରାୟ ତାହାର ହିଁ ସ୍ଫୁରଣା ହୁଏ । କେବେ-କେବେ ସଂଚିତରେ ଭର୍ତ୍ତିହୋଇଥିବା ପୁରୁଣା କର୍ମର ମଧ୍ୟ ସ୍ଫୁରଣା ହୋଇଯାଏ * । ଯେପରି କୌଣସି ଏକ ପାତ୍ରରେ ଯଦି ପ୍ରଥମେ ପିଆଜ ରଖିଦେବା ଓ ତାପରେ କ୍ରମଶଃ ଗହମ, ଚଣା, ଯଅ, ମାଣ୍ଡିଆ ଆଦିକୁ ସ୍ତର-ସ୍ତର କରି ରଖିବା, ତେବେ ତାହାକୁ ବାହାର ସମୟରେ ସର୍ବପ୍ରଥମେ ଯେଉଁ ମାଣ୍ଡିଆ ରଖାଯାଇଥିଲା, ତାହା ପ୍ରଥମେ ବାହାରିବ । ଏବଂ୨ୟ ସ୍ତରଠାରୁ ବା ପିଆଜ ନବାହାରିବା ପୂର୍ବରୁ ପିଆଜର ଦୁର୍ଗନ୍ଧ ମଧ୍ୟ ମଝିରେ-ମଝିରେ ଆସିଯାଇପାରେ । ପରନ୍ତୁ ଏ ଦୃଷ୍ଟାନ୍ତ ପୂର୍ଣ୍ଣରୂପେ ଯତିପାତ ହେଉନାହିଁ; କାରଣ ପିଆଜ, ଗହମ, ଆଦି ସାବୟବ ପଦାର୍ଥ ଏବଂ ସଂଚିତ କର୍ମ ନିରବୟବ ଅଟେ । ଏହି ଦୃଷ୍ଟାନ୍ତଟିକୁ କେବଳ ଏତିକି ଅଂଶରେ ବୁଝିବାକୁ ହେବ କି, ନୂତନ କ୍ରିୟମାଣ କର୍ମର ସ୍ଫୁରଣା ତ ବହୁତ ହୁଏ ଏବଂ କେବେ-କେବେ ଅଚାନକ ପୁରୁଣା କର୍ମର ସ୍ଫୁରଣା ମଧ୍ୟ ହୋଇଯାଏ ।

ଏହିଭଳି ଯେତେବେଳେ ନିଦଆସେ ସେଥିରେ ମଧ୍ୟ ସ୍ଫୁରଣା ଉଠେ । ନିଦ୍ରାରେ ଜାଗ୍ରତ ଅବସ୍ଥା ଦବିଯିବା କାରଣରୁ ସଂଚିତର ସ୍ଫୁରଣା ଗୁଡ଼ିକ ସ୍ୱପ୍ନରୂପରେ ଦେଖିବାକୁ ମିଳେ, ତାକୁ ହିଁ ସ୍ୱପ୍ନାବସ୍ଥା କୁହାଯାଏ$ ।

---

*ସ୍ଫୁରଣା ସଞ୍ଚିତ ଅନୁସାରେ ହୋଇଥାଏ ଏବଂ ପ୍ରାରବ୍ଧ ଅନୁସାରେ ମଧ୍ୟ ହୋଇଥାଏ ।ସଞ୍ଚିତ ଅନୁସାରେ ଯେଉଁ ସ୍ଫୁରଣା ହୁଏ, ସେ ମନୁଷ୍ୟକୁ କର୍ମ କରିବା ପାଇଁ ବାଧ୍ୟ କରେନାହିଁ । ପରନ୍ତୁ ସଞ୍ଚିତର ସ୍ଫୁରଣାରେ ଯଦି ରାଗ-ଦ୍ୱେଷ ହୋଇଯାଏ, ତେବେ ସେ ସଂକଳ୍ପ ରୂପ ନେଇ ମନୁଷ୍ୟକୁ କର୍ମ କରିବା ପାଇଁ ବାଧ୍ୟ କରିପାରେ । ପ୍ରାରବ୍ଧ ଅନୁସାରେ ଯେଉଁ ସ୍ଫୁରଣା ହୁଏ, ତାହା (ଫଳ-ଭୋଗ କରାଇବା ପାଇଁ) ମନୁଷ୍ୟକୁ କର୍ମ କରିବାପାଇଁ ବାଧ୍ୟକରେ । ପରନ୍ତୁ ସିଏ କେବଳ ବିହିତ କର୍ମ କରିବା ପାଇଁ ବାଧ୍ୟ କରେ, ନିଷିଦ୍ଧ କର୍ମ କରିବା ପାଇଁ ନୁହେଁ । କାରଣ କି, ବିବେକ ପ୍ରଧାନ ମନୁଷ୍ୟ ଶରୀର ନିଷିଦ୍ଧ କର୍ମ କରିବା ପାଇଁ ମିଳିନାହିଁ । ଅତଏବ ନିଜର ବିବେକ ଶକ୍ତିକୁ ପ୍ରବଳ କରି ନିଷିଦ୍ଧକୁ ତ୍ୟାଗ କରିବାର ଦାୟିତ୍ୱ ମନୁଷ୍ୟ ଉପରେ ରହିଛି ଏବଂ ଏହା କରିବାରେ ମନୁଷ୍ୟ ସ୍ୱତନ୍ତ୍ର ଅଟେ ।

$ ଜାଗ୍ରତ-ଅବସ୍ଥାରେ ମଧ୍ୟ ଜାଗ୍ରତ, ସ୍ୱପ୍ନ ଏବଂ ସୁଷୁପ୍ତି- ତିନୋଟି ଅବସ୍ଥା ହୋଇଥାଏ, ଯଥାଃ- ମନୁଷ୍ୟ ଜାଗ୍ରତ-ଅବସ୍ଥାରେ ବହୁତ ସାବଧାନରେ କାମ କରେ ତାହା ହେଉଛି ଜାଗ୍ରତରେ ଜାଗ୍ରତ-ଅବସ୍ଥା । ଜାଗ୍ରତ-ଅବସ୍ଥାରେ ମନୁଷ୍ୟ ଯେଉଁ କାମ କରୁଥାଏ, ସେହିକାମ ବ୍ୟତୀତ ଅଚାନକ ଅନ୍ୟ ଯେଉଁ ସ୍ଫୁରଣା ଉଠେ, ତାହା ହେଉଛି ଜାଗ୍ରତରେ ସ୍ୱପ୍ନ-ଅବସ୍ଥା । ଜାଗ୍ରତ-ଅବସ୍ଥାରେ କେବେ-କେବେ କାମ କରୁଥିବା ସମୟରେ ମଧ୍ୟ ସେହି ସମୟର ଏବଂ ପୂର୍ବରୁ କରାଯାଇଥିବା କର୍ମର କୌଣସି ସ୍ଫୁରଣା ନ ଥାଏ, ସମ୍ପୂର୍ଣ୍ଣ ବୃତ୍ତି-ରହିତ ଅବସ୍ଥା ହୋଇଯାଏ । ତାହା ହେଉଛି ଜାଗ୍ରତରେ ସୁଷୁପ୍ତି-ଅବସ୍ଥା ।

କର୍ମ କରିବାର ବେଗ ପ୍ରବଳ ଥିବାରୁ ଜାଗ୍ରତ-ଅବସ୍ଥାରେ ତ ଜାଗ୍ରତ ଏବଂ ସ୍ୱପ୍ନ-ଅବସ୍ଥା ମଧ୍ୟ

ସ୍ୱପ୍ନାବସ୍ଥାରେ ବୁଦ୍ଧିର ଅସାବଧାନତା ଯୋଗୁଁ କ୍ରମ, ବ୍ୟତିକ୍ରମ ଓ ଅନୁକ୍ରମର ଠିକଣା ରହେନାହିଁ । ଯଥା-ସ୍ୱପ୍ନରେ ମନୁଷ୍ୟ ସହର ଦିଲ୍ଲୀର ଦେଖେ ତ ବଜାର ବମ୍ବେର, ଏବଂ ବଜାରର ଦୋକାନ ଗୁଡ଼ିକ କଲିକତାର ଦୋକାନ ଭଳି ଦେଖେ । କେତେକ ଜୀବିତ ଲୋକ ଦେଖାଯାଉଛନ୍ତି ତ କୌଣସି ମୃତବ୍ୟକ୍ତି ସହିତ ସାକ୍ଷାତ ହେଉଛି, ଏମିତିକି କଥାବାର୍ତ୍ତା ମଧ୍ୟ ହୋଇଯାଉଛି, ଇତ୍ୟାଦି... ଇତ୍ୟାଦି... ।

ଜାଗ୍ରତ ଅବସ୍ଥାରେ ପ୍ରତ୍ୟେକ ମନୁଷ୍ୟଙ୍କ ମନରେ ଅନେକ ପ୍ରକାରର ସ୍ଫୁରଣାମାନ ଉତ୍ପନ୍ନ ହୋଇଥାଏ । ଯେତେବେଳେ ଜାଗ୍ରତ ଅବସ୍ଥାରେ ଶରୀର, ଇନ୍ଦ୍ରିୟ, ଏବଂ ମନ ଉପରୁ ବୁଦ୍ଧିର ଅଧିକାର ହଟିଯାଏ, ସେତେବେଳେ ମନୁଷ୍ୟ ମନରେ ଯାହା ଆସେ, ସେ ତାହା କରିପକାଏ ଓ କହିପକାଏ । ଏହିଭଳି ଉଚିତ୍-ଅନୁଚିତ୍ ବିଚାର କରିବାର ଶକ୍ତି କାମ ନ କରିବା ଦ୍ୱାରା ତାକୁ ସିଧା-'ସରଳ ପାଗଳ' କୁହାଯାଏ । ପରନ୍ତୁ ଯାହାର ଶରୀର, ଇନ୍ଦ୍ରିୟ, ଏବଂ ମନ ଉପରେ ବୁଦ୍ଧିର ଅଧିକାର ରହିଛି, ସେ ଯାହା ଉଚିତ ବୁଝେ ତାହା ହିଁ କୁହେ ଏବଂ ଯାହା ଅନୁଚିତ୍ ବୋଲି ବୁଝେ ତାହା କୁହେନାହିଁ । ବୁଦ୍ଧିରେ ସାବଧାନତା ରହିବାଦ୍ୱାରା ସେ ସାବଚେତ ରୁହେ, ତେଣୁ ସେ 'ଚତୁର ପାଗଳ' ଅଟେ ।

ଏହିଭଳି ମନୁଷ୍ୟ ଯେପର୍ଯ୍ୟନ୍ତ ପରମାତ୍ମାଙ୍କୁ ପ୍ରାପ୍ତ କରିନେଇନାହିଁ ସେ ପର୍ଯ୍ୟନ୍ତ ସେ ନିଜକୁ ସ୍ଫୁରଣାମାନଙ୍କ ଦୌରାତ୍ମ୍ୟରୁ ରକ୍ଷା କରି ପାରେନାହିଁ ।

---

ଅଧିକ ହୁଏ, କିନ୍ତୁ ସୁଷୁପ୍ତି-ଅବସ୍ଥା ବହୁତ କମ୍ । ଯଦି କୌଣସି ସାଧକ ଜାଗ୍ରତରେ ସ୍ୱାଭାବିକ ସୁଷୁପ୍ତିକୁ ସ୍ଥାୟୀ କରି ନିଅନ୍ତି ତେବେ ତାଙ୍କର ସାଧନ ବହୁତ ତୀବ୍ର ହୋଇଯିବ ;କାହିଁକି ନା ଜାଗ୍ରତ-ସୁଷୁପ୍ତିରେ ସାଧକର ପରମାତ୍ମାଙ୍କ ସହିତ ନିରାବରଣ ରୂପେ ସ୍ୱତଃ ସମ୍ବନ୍ଧ ହୋଇଯାଏ । ଏହିଭଳି ସୁଷୁପ୍ତି-ଅବସ୍ଥାରେ ମଧ୍ୟ ସଂସାରର ସମ୍ବନ୍ଧ କଟିଯାଏ । କିନ୍ତୁ ବୁଦ୍ଧ-ବୃତ୍ତି ଅଜ୍ଞାନରେ ଲୀନ ହୋଇଯିବାରୁ ସ୍ୱରୂପ(ଆତ୍ମା) ର ସ୍ପଷ୍ଟ ଅନୁଭବ ହୁଏନାହିଁ । ଜାଗ୍ରତ-ସୁଷୁପ୍ତିରେ ବୁଦ୍ଧି ଜାଗ୍ରତ ରହିବାଦ୍ୱାରା ସ୍ୱରୂପର ସ୍ପଷ୍ଟ ଅନୁଭବ ହୁଏ ।

ଏହି ଜାଗ୍ରତ-ସୁଷୁପ୍ତି ସମାଧିଠାରୁ ମଧ୍ୟ ବିଲକ୍ଷଣ ଅଟେ, କାହିଁକି ନା ଏହା ସ୍ୱତଃ ହୁଏ । ଅପରପକ୍ଷେ ସମାଧିରେ ଅଭ୍ୟାସ ଦ୍ୱାରା ବୃତ୍ତି ଗୁଡ଼ିକୁ ଏକାଗ୍ର ତଥା ନିରୁଦ୍ଧ କରିବାକୁ ପଡ଼େ । ସୁତରାଂ ସମାଧିରେ ପୁରୁଷାର୍ଥ ସାଥିରେ ରହିବା କାରଣରୁ ଶରୀରରେ ସ୍ଥିତି ଥାଏ, କିନ୍ତୁ ଜାଗ୍ରତ-ସୁଷୁପ୍ତିରେ ଅଭ୍ୟାସ ଏବଂ ଅହଂକାରର ବୃତ୍ତିଗୁଡିକ ସ୍ୱତଃ ନିରୁଦ୍ଧ ହୋଇଥିବାରୁ ସ୍ୱରୂପର ସ୍ଥିତି ଅର୍ଥାତ୍ ସ୍ୱରୂପର ଅନୁଭବ ହୁଏ ।

ପରମାତ୍ମାଙ୍କ ପ୍ରାପ୍ତି ହେବାପରେ ଖରାପ ସ୍ଫୁରଣା ଗୁଡ଼ିକ ପୂର୍ଣ୍ଣରୂପେ ନଷ୍ଟ ହୋଇଯାଏ।ସୁତରାଂ ଜୀବନ୍ମୁକ୍ତ ମହାପୁରୁଷଙ୍କ ମନରେ କଦାପି ସ୍ୱପ୍ନରେମଧ୍ୟ ଅପବିତ୍ର, ଖରାପ ବିଗ୍ଭର ଆସେନାହିଁ। ଯଦିଓ ତାଙ୍କ ଶରୀରରେ ପ୍ରାରବ୍ଧବଶତଃ (ବ୍ୟାଧିଆଦି ବା ଅନ୍ୟ କୌଣସି କାରଣରୁ) କେବେ-କେବେ ବେହୋସ, ଉନ୍ମାଦ ଇତ୍ୟାଦି ଦେଖିବାକୁ ମିଳେ, ତେବେ ସେଥିରେ ମଧ୍ୟ ସେ ଶାସ୍ତ୍ର-ନିଷିଦ୍ଧ କଥା କୁହନ୍ତି ନାହିଁ, କି ଶାସ୍ତ୍ର ନିଷିଦ୍ଧ କର୍ମ କରନ୍ତିନାହିଁ, କାହିଁକିନା ଅନ୍ତଃକରଣ ଶୁଦ୍ଧ ହେବାପରେ ଶାସ୍ତ୍ର ନିଷିଦ୍ଧ କହିବା ବା କରିବା ତାଙ୍କର ସ୍ୱଭାବରେ ରହେନାହିଁ।




ସଞ୍ଚିତରୁ ଯେଉଁ କର୍ମ ଫଳ ଦେବାପାଇଁ ଉନ୍ମୁଖ ହୋଇଥାଏ, ସେହି କର୍ମ ସମୂହକୁ ପ୍ରାରବ୍ଧ କର୍ମ କୁହାଯାଏ*। ପ୍ରାରବ୍ଧ କର୍ମର ଫଳ ତ ଅନୁକୂଳ ଏବଂ ପ୍ରତିକୂଳ ପରିସ୍ଥିତି ରୂପନେଇ ସମ୍ମୁଖରେ ଉପସ୍ଥିତ ହୁଏ, ପରନ୍ତୁ ସେହି ପ୍ରାରବ୍ଧ କର୍ମକୁ ଭୋଗିବା ପାଇଁ ପ୍ରାଣୀମାନଙ୍କର ପ୍ରବୃତ୍ତି ୩ପ୍ରକାରର ହୋଇଥାଏ। ୧-ସ୍ୱେଚ୍ଛାପୂର୍ବକ, ୨-ଅନିଚ୍ଛା (ଦୈବେଚ୍ଛା)ପୂର୍ବକ ଏବଂ ୩-ପରେଚ୍ଛା ପୂର୍ବକ। ଉଦାହରଣ ସ୍ୱରୂପ:-

(୧) କୌଣସି ଜଣେ ବ୍ୟାପାରୀ ମାଲ୍ କ୍ରୟକଲେ, ସେଥିରେ ତାଙ୍କର କ୍ଷତିହେଲା, ଏବଂ ଅନ୍ୟଜଣେ ମଧ୍ୟ ମାଲ୍ କ୍ରୟକଲେ, ସେଥିରେ ତାଙ୍କର ଲାଭହେଲା। ଏ ଦୁଇ ଜଣଙ୍କ ଭିତରେ ଲାଭହେବା ଏବଂ କ୍ଷତି ହେବା ତାଙ୍କ

* 'ପ୍ରକର୍ଷେଣ ଆରବ୍ଧଃ ପ୍ରାରବ୍ଧଃ' ଅର୍ଥାତ୍ ଭଲ ଭାବରେ ଫଳ ଦେବାପାଇଁ ଯାହାର ଆରମ୍ଭ ହୋଇଯାଇଛି, ତାହାର ନାମ 'ପ୍ରାରବ୍ଧ' ଅଟେ।

ଶୁଭ-ଅଶୁଭ କର୍ମରୁ ଉତ୍ପନ୍ନ ହୋଇଥିବା ପ୍ରାରବ୍ଧର ଫଳ ଅଟେ । ପରନ୍ତୁ ମାଲ କ୍ରୟକରିବାରେ ତାଙ୍କର ପ୍ରବୃତ୍ତି ସ୍ୱେଚ୍ଛା ପୂର୍ବକ ହୋଇଥିଲା ।

(୨)-ଜଣେ ସଜ୍ଜନ କୌଣସି ଏକ ଜାଗାକୁ ଯାଉଥିଲେ । ବନ୍ୟାଯୋଗୁଁ ନଦୀରେ ଏକ ଧନ-ରତ୍ନପୂର୍ଣ୍ଣ ସିନ୍ଧୁକ ଭାସିଆସୁଥିଲା, ସଜ୍ଜନ ଜଣଙ୍କ ତାକୁ ନେଇଗଲେ, ସେହିଭଳି ଅନ୍ୟ ଜଣେ ସଜ୍ଜନ ରାସ୍ତାରେ ଯାଉ-ଯାଉ ତାଙ୍କଉପରେ ବୃକ୍ଷର ଏକଡାଳ ଭାଙ୍ଗିପଡ଼ିଲା, ଏଥିରେ ସେ କ୍ଷତ-ବିକ୍ଷତ ମଧ୍ୟ ହୋଇଗଲେ । ଏଦୁଇଟି ମଧ୍ୟରୁ ଧନ ମିଳିବା ଏବଂ ବୃକ୍ଷର ଡ଼ାଳ ଭାଙ୍ଗି କ୍ଷତ-ବିକ୍ଷତ ହେବା ସେମାନଙ୍କ ଶୁଭ-ଅଶୁଭ କର୍ମରୁ ତିଆରିହୋଇ ରହିଥିବା ପ୍ରାରବ୍ଧର ଫଳ ଅଟେ, ପରନ୍ତୁ ଧନପୂର୍ଣ୍ଣ ସିନ୍ଧୁକ ମିଳିବା ଓ ଡ଼ାଳଭାଙ୍ଗି କ୍ଷତ-ବିକ୍ଷତ ହେବା- ଏହି ପ୍ରବୃତ୍ତି ଅନିଚ୍ଛା-(ଦୈବେଚ୍ଛା)ପୂର୍ବକ ହେଲା ।

(୩)-କୌଣସି ଏକ ପୁତ୍ରକୁ ଜଣେ ଧନୀ ବ୍ୟକ୍ତି କୋଳକୁ ନେଇଗଲେ ବା ପୁତ୍ରରୂପେ ସ୍ୱୀକାର କରିନେଲେ, ଯଦ୍ୱାରା ତାଙ୍କର ସମସ୍ତ ଧନ ଉକ୍ତ ପୋଷ୍ୟ ପୁତ୍ରକୁ ମିଳିଗଲା । ସେହିଭଳି ଚୋର କାହାର ସବୁଧନ ଲୁଟିନେଲା । ଏଦୁଇଟି ମଧ୍ୟରେ ପୁତ୍ରକୁ ଧନୀର ଧନ ମିଳିବା ଓ ଚୋରିରେ ଧନ ଚାଲିଯିବା, ଏହା ତ ତାଙ୍କର ଶୁଭ-ଅଶୁଭ କର୍ମରୁ ତିଆରି ହୋଇଥିବା ପ୍ରାରବ୍ଧର ଫଳ ଅଟେ । ପରନ୍ତୁ ପୁତ୍ରକୁ ଧନ ମିଳିଯିବା ଓ ଘରୁ ଧନ ଚୋରିହେବା- ଏ ପ୍ରବୃତ୍ତି ପରେଚ୍ଛା ପୂର୍ବକ ହେଲା ।

ଏଠାରେ ଅନ୍ୟଏକ ବିଶେଷ କଥା ବୁଝିନେବା ଆବଶ୍ୟକ କି କର୍ମ ସମୂହର ଫଳ **'କର୍ମ'** ହୁଏନା, ବରଂ **'ପରିସ୍ଥିତି'** ହୁଏ ଅର୍ଥାତ୍ ପ୍ରାରବ୍ଧ କର୍ମ ଗୁଡ଼ିକର ଫଳ ପରିସ୍ଥିତି ରୂପେ ସମ୍ମୁଖକୁ ଆସେ । ଯଦି ନୂଆ(କ୍ରିୟମାଣ) କର୍ମକୁ ପ୍ରାରବ୍ଧର ଫଳ ବୋଲି ମାନି ନିଆଯାଏ ତେବେ **'ଏହା କର, ଏହା କରନା'**- ଶାସ୍ତ୍ର ଓ ଗୁରୁଜନ ମାନଙ୍କର ଏହି ଆଜ୍ଞା ବା ବିଧି-ନିଷେଧ ନିରର୍ଥକ ହୋଇଯିବ । ଦ୍ୱିତୀୟତଃ- ପୂର୍ବରୁ ଯେପରି କର୍ମ କରିଛେ, ଯଦି ସେହି ଅନୁସାରେ ଜନ୍ମହେବ ଏବଂ ସେହି ଅନୁସାରେ କର୍ମ ହେବ, ତେବେ ସେହି କର୍ମ ଆଗାମୀ ଭବିଷ୍ୟତରେ ପୁଣି ନୂଆ-ନୂଆ କର୍ମକୁ ଜନ୍ମଦେବ । ଯଦ୍ୱାରା କର୍ମ-ପରମ୍ପରା ଏମିତି ହିଁ ଚାଲିଥିବ ଅର୍ଥାତ୍ ଏହାର ଅନ୍ତସମୟ କେବେବି ଆସିବନାହିଁ ।

ପ୍ରାରବ୍ଧ କର୍ମରୁ ମିଳୁଥିବା ଫଳ ୨ପ୍ରକାରର ଅଟେ- ପ୍ରାପ୍ତଫଳ ଏବଂ

ଅପ୍ରାପ୍ତ ଫଳ । ବର୍ତ୍ତମାନ ପ୍ରାଣୀ ମାନଙ୍କ ସମ୍ମୁଖକୁ ଯେଉଁ ଅନୁକୂଳ ବା ପ୍ରତିକୂଳ ପରିସ୍ଥିତି ଆସୁଅଛି, ତାହା **'ପ୍ରାପ୍ତଫଳ'** ଏବଂ ଇହଜନ୍ମରେ ଯେଉଁସବୁ ଅନୁକୂଳ-ପ୍ରତିକୂଳ ପରିସ୍ଥିତି ଆଗକୁ ଆସିବାର ଅଛି ତାହା **'ଅପ୍ରାପ୍ତଫଳ'** ଅଟେ ।

କ୍ରିୟମାଣ କର୍ମଗୁଡ଼ିକର ଯେଉଁ ଫଳ-ଅଂଶ ସଞ୍ଚିତରେ ଜମାହୋଇ ରହିଥାଏ, ତାହାହିଁ ପ୍ରାରବ୍ଧ ହୋଇ ଅନୁକୂଳ, ପ୍ରତିକୂଳ ଏବଂ ମିଶ୍ରିତ ପରିସ୍ଥିତି ରୂପରେ ମନୁଷ୍ୟ ସମ୍ମୁଖକୁ ଆସେ । ଅତଏବ ଯେ ପର୍ଯ୍ୟନ୍ତ ସଂଚିତ କର୍ମ ରହିଥାଏ, ସେ ପର୍ଯ୍ୟନ୍ତ ପ୍ରାରବ୍ଧ ତିଆରିହୋଇ ଚାଲିଥାଏ । ଏବଂ ପ୍ରାରବ୍ଧ ପରିସ୍ଥିତି ରୂପରେ ପରିଣତ ହୋଇ ଚାଲିଥାଏ । ସୁତରାଂ ପରିସ୍ଥିତି ମନୁଷ୍ୟକୁ ସୁଖୀ-ଦୁଃଖୀ ହେବାପାଇଁ ବାଧ୍ୟ କରେନାହିଁ । ସୁଖୀ-ଦୁଃଖୀ ହେବାରେ ତ ପରିବର୍ତ୍ତନଶୀଳ ପରିସ୍ଥିତି ସହିତ ସମ୍ବନ୍ଧ ଯୋଡ଼ିବା ହିଁ ମୁଖ୍ୟ କରଣ ଅଟେ । ପରିସ୍ଥିତି ସହିତ ସମ୍ବନ୍ଧ ଯୋଡ଼ିବାରେ ଅଥବା ନ ଯୋଡ଼ିବାରେ ମନୁଷ୍ୟ ସର୍ବଥା ସ୍ୱାଧୀନ, କଦାପି ପରାଧୀନ ନୁହେଁ । ଯିଏ ପରିବର୍ତ୍ତନଶୀଳ ପରିସ୍ଥିତି ସହିତ ନିଜର ସମ୍ବନ୍ଧମାନେ, ସେହି ଅବିବେକୀ ପୁରୁଷର ତ ସୁଖ-ଦୁଃଖ ଲାଗି ରହିଥାଏ, କିନ୍ତୁ ଯିଏ ପରିସ୍ଥିତି ସହିତ ସମ୍ବନ୍ଧ ମାନେନାହିଁ ସେହି ବିବେକୀ ପୁରୁଷ କଦାପି ସ୍ୱପ୍ନରେ ମଧ୍ୟ ସୁଖି-ଦୁଃଖୀ ହୁଏନାହିଁ । ଅତଃ ତାର ସ୍ଥିତି ସ୍ୱତଃ ସାମ୍ୟାବସ୍ଥାରେ ଥାଏ, ଯହାକି ତାର ଅସଲି ସ୍ୱରୂପ ଅଟେ ।

କର୍ମରେ ମନୁଷ୍ୟଙ୍କ ପ୍ରାରବ୍ଧର ପ୍ରଧାନତା ଥାଏ ନାଁ ପୁରୁଷାର୍ଥର ? ଅଥବା ପ୍ରାରବ୍ଧ ବଳବାନ୍ ଅଟେ ନାଁ ପୁରୁଷାର୍ଥ?-ଏହି ବିଷୟରେ ବହୁତ ସନ୍ଦେହ ଜାତ ହୁଏ । ସେଗୁଡ଼ିକର ସମାଧାନ ପାଇଁ ପ୍ରଥମେ ଆମକୁ ଏହା ବୁଝିନେବାକୁ ପଡ଼ିବ କି, ପ୍ରାରବ୍ଧ ଏବଂ ପୁରୁଷାର୍ଥର ବାସ୍ତବିକ୍ ସଂଜ୍ଞା କଣ ?

ପ୍ରତ୍ୟେକ ମନୁଷ୍ୟଠାରେ ୪ ପ୍ରକାରର କାମନା ହୋଇଥାଏ-ପ୍ରଥମତଃ ଧନର, ୨ୟ ଧର୍ମର, ୩ୟ ଭୋଗର ଏବଂ ୪ର୍ଥ ମୁକ୍ତିର । ପ୍ରଚଳିତ ଭାଷାରେ ଏଇ ୪ଟିକୁ ଅର୍ଥ, ଧର୍ମ, କାମ ଓ ମୋକ୍ଷ ନାମରେ କୁହାଯାଏ,-

**(୧) ଅର୍ଥ-** ଧନକୁ 'ଅର୍ଥ' କୁହନ୍ତି । ସେହି ଧନ ୨ପ୍ରକାରର ଅଟେ- **ସ୍ଥାବର ଏବଂ ଜଙ୍ଗମ । ସୁନା, ରୁପା, ଟଙ୍କା, ଜମି-ବାଡ଼ି ଓ ଘରଦ୍ୱାର ଇତ୍ୟାଦି ସ୍ଥାବର ସମ୍ପତ୍ତି ଏବଂ ଗାଈ, ମଇଁଷି, ଓଟ, ଘୋଡ଼ା, ମେଣ୍ଢା, ଛେଳି ଇତ୍ୟାଦି ଜଙ୍ଗମ ସମ୍ପତ୍ତି ।**

**(୨) ଧର୍ମ-** ସକାମ ଅଥବା ନିଷ୍କାମ ଭାବରେ ଯେଉଁ ଯଜ୍ଞ, ତପ, ଦାନ ବ୍ରତ, ତୀର୍ଥ ଆଦି କରାଯାଏ, ତାହାକୁ 'ଧର୍ମ' କୁହନ୍ତି ।

**(୩)କାମ-** ସାଂସାରିକ ସୁଖ-ଭୋଗକୁ 'କାମ' କୁହାଯାଏ । ସେହି ସୁଖଭୋଗ ଆଠ ପ୍ରକାରର ଅଟେ- ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ, ମାନ, ବଡ଼ାଇ ଏବଂ ଆରାମ ।

**(କ)ଶବ୍ଦ-** ଶବ୍ଦ ୨ ପ୍ରକାରର, ବର୍ଣ୍ଣାତ୍ମକ ଏବଂ ଧ୍ୱନ୍ୟାତ୍ମକ । ବ୍ୟାକରଣ, କୋଷ, ସାହିତ୍ୟ, ଉପନ୍ୟାସ, ଗଳ୍ପ, କାହାଣୀ ଆଦି ବର୍ଣ୍ଣାତ୍ମକ ଶବ୍ଦ ଅଟେ* । ମୃଦଙ୍ଗ ଆଦି ପିଟାବାଦ୍ୟ, ବୀଣା ଆଦି ତାରବାଦ୍ୟ, ବଂଶିଆଦି ଫୁଙ୍କାବାଦ୍ୟ ଏବଂ କୁବୁଜି, ଝାଞ୍ଜ ଆଦି ସାଢ଼େ୩ ପ୍ରକାରର ବାଜା ଧ୍ୱନ୍ୟାତ୍ମକ ଶବ୍ଦକୁ ପ୍ରକଟ କରିଥାଏ $ । ଏଇ ବର୍ଣ୍ଣାତ୍ମକ ଏବଂ ଧ୍ୱନ୍ୟାତ୍ମକ ଶବ୍ଦକୁ ଶୁଣିବା ଦ୍ୱାରା ଯେଉଁ ସୁଖ ମିଳେ, ତାହା ଶବ୍ଦର ସୁଖ ଅଟେ ।

**(ଖ)ସ୍ପର୍ଶ-** ସ୍ତ୍ରୀ, ପୁତ୍ର, ମିତ୍ର ଆଦି ବ୍ୟକ୍ତିଙ୍କ ସହିତ ମିଶିବା ଦ୍ୱାରା ତଥା ଥଣ୍ଡା, ଗରମ ଓ କୋମଳ ସ୍ପର୍ଶଦ୍ୱରା ଅର୍ଥାତ୍ ତ୍ୱକ୍ ସହିତ ସେ ଗୁଡ଼ିକର ସଂଯୋଗ ହେବାଦ୍ୱାରା ଯେଉଁ ସୁଖ ମିଳେ, ତାହା ସ୍ପର୍ଶ ସୁଖ ଅଟେ ।

**(ଗ)ରୂପ-** ନେତ୍ରଦ୍ୱାରା ଖେଳ, ତାମସା, ସିନେମା, ଯାଦୁ, ବନ, ପାହାଡ଼, ସରୋବର, କୋଠା ଆଦିର ସୌନ୍ଦର୍ଯ୍ୟ ଦେଖିବାରେ ଯେଉଁ ସୁଖ ମିଳେ, ତାହା ରୂପର ସୁଖ ଅଟେ ।

**(ଘ)ରସ-** ମଧୁର(ମିଠା), ଅମ୍ଳ(ଖଟା), ଲବଣ(ଲୁଣି), କଟୁ(କଡ଼ା), ତିକ୍ତ(ପିତା) ଏବଂ କଷା- ଏହିଛଅ ପ୍ରକାରର ରସକୁ ଖାଇଲେ ଯେଉଁ ସୁଖହୁଏ ତାହା ରସର ସୁଖ ଅଟେ ।

---

* ବର୍ଣ୍ଣାତ୍ମକ ଶବ୍ଦରେ ମଧ୍ୟ ୧୦ଟି ରସ ରହିଛି- ଶୃଙ୍ଗାର, ହାସ୍ୟ, କରୁଣ, ରୌଦ୍ର, ବୀର, ଭୟାନକ, ବିଭତ୍ସ, ଅଦ୍ଭୁତ, ଶାନ୍ତ ଏବଂ ବାତ୍ସଲ୍ୟ । ଏହି ଦଶଗୋଟି ରସ ଚିତ୍ତ ଦ୍ରବିତ ହେବାଦ୍ୱାରା ପ୍ରକାଶ ପାଇଥାଏ । ଏହି ରସର ଉପଯୋଗ ଯଦି ଭଗବାନଙ୍କ ପ୍ରତି କରାଯାଏ ତେବେ ଏ ରସଗୁଡ଼ିକ କଲ୍ୟାଣ ପ୍ରଦାନକାରୀ ହୋଇଥାନ୍ତି । ଯଦି ଏଥିରୁ ସୁଖ-ଭୋଗ କରାଯାଏ, ତେବେ ଏ ସମସ୍ତ ରସ ପତନକାରୀ ହୋଇଯାନ୍ତି ।

$ ଢୋଲ, ଢୋଲକୀ, ତବଲା,ପଖାବଜ, ମୃଦଙ୍ଗ ଆଦି ପିଟାବାଦ୍ୟ ଅଟେ, ସୀତାର, ସାରଙ୍ଗୀ, ବେହେଲା ଆଦି ତାର ବାଦ୍ୟ ଅଟେ, ହାରମ୍ୟୁନିୟମ୍, ବଇଁଶି, ମହୁରୀ ଆଦି ଫୁଙ୍କା ବାଦ୍ୟ ଅଟେ, ଏବଂ ଝାଞ୍ଜ, ଗିନି, କରତାଳ, ଢୋଲ ଇତ୍ୟାଦି ବାଦ୍ୟର ଅଧା ତାଳ ଅଟେ ।

**(ଙ)ଗନ୍ଧ-** ନାକଦ୍ୱାରା ଅତର, ପାଉଡ଼ର, ଫୁଲ ଆଦି ସୁଗନ୍ଧଯୁକ୍ତ ଏବଂ ପିଆଜ, ରସୁଣ ଆଦି ଦୁର୍ଗନ୍ଧଯୁକ୍ତ ପଦାର୍ଥକୁ ସୁଙ୍ଘିବାଦ୍ୱାରା ଯେଉଁ ସୁଖମିଳେ, ତାହା ଗନ୍ଧର ସୁଖ ଅଟେ ।

**(ଚ)ମାନ-** ଶରୀରର ଆଦର-ସତ୍କାର ହେବାଦ୍ୱାରା ଯେଉଁସୁଖ ମିଳେ, ତାହା ମାନର ସୁଖ ଅଟେ ।

**(ଛ)ବଡ଼ାଇ-** ନାମର ପ୍ରଶଂସା, ବାଃ-ବାଃ ହେବାଦ୍ୱାରା ଯେଉଁ ସୁଖମିଳେ ତାହା ବଡ଼ାଇରୁ ମିଳୁଥିବା ସୁଖ ଅଟେ ।

**(ଜ)ଆରାମ-** ଶରୀରକୁ ପରିଶ୍ରମ କରିବାକୁ ନ ଦେଇ ଅକର୍ମଣ୍ୟହୋଇ ପଡ଼ି ରହିବାଦ୍ୱାରା ଯେଉଁସୁଖ ମିଳେ, ତାହା ଆରାମ ସୁଖ ଅଟେ ।

**(୪)ମୋକ୍ଷ-** ଆତ୍ମସାକ୍ଷାତକାର, ତତ୍ତ୍ୱଜ୍ଞାନ, କଲ୍ୟାଣ, ଉଦ୍ଧାର, ମୁକ୍ତି ଭଗବତ୍‌ଦର୍ଶନ, ଭଗବତ୍ ପ୍ରେମ ଆଦିର ନାମ "ମୋକ୍ଷ" ଅଟେ ।

ବାସ୍ତବରେ ଦେଖିବାକୁ ଗଲେ ଏଇ (ଅର୍ଥ, ଧର୍ମ, କାମ ଏବଂ ମୋକ୍ଷ) ୪ଟି ମଧ୍ୟରୁ ଅର୍ଥ ଏବଂ ଧର୍ମ ଉଭୟେ-ଉଭୟକୁ ବୃଦ୍ଧିକରିବାରେ ସାହାଯ୍ୟ କରନ୍ତି । ଅର୍ଥ ଦ୍ୱାରା ଧର୍ମ ଏବଂ ଧର୍ମ ଦ୍ୱାରା ଅର୍ଥର ବୃଦ୍ଧି ହୁଏ । ପରନ୍ତୁ ଧର୍ମର ପାଳନ ଯଦି ସକାମଭାବରେ କାମନା ପୂର୍ତ୍ତି ପାଇଁ କରାଯାଏ, ତେବେ ତାହା କାମନା ପୂର୍ତ୍ତି କରିବା ପରେ ନଷ୍ଟ (ଶେଷ) ହୋଇଯାଏ । ଏବଂ ଅର୍ଥକୁ କାମନା ପୂର୍ତ୍ତିରେ ଯଦି ଲଗାଯାଏ, ତେବେ ଅର୍ଥ ମଧ୍ୟ କାମନା ପୂର୍ତ୍ତିପରେ ନଷ୍ଟ ହୋଇଯାଏ । ତାତ୍ପର୍ଯ୍ୟ ଏହିକି ଯେ କାମନା, ଧର୍ମ ଏବଂ ଅର୍ଥ-ଉଭୟକୁ ଖାଇଯାଏ । ଅତଏବ ଭଗବାନ ଗୀତାରେ କାମନାକୁ **'ମହାଶନ'** (ବହୁତ ଖାଇବା ବାଲା) କହି ବିଶେଷ ରୂପେ ତ୍ୟାଗ କରିବା ପାଇଁ କହିଛନ୍ତି । (ଗୀତା୩ ।୩୭-୪୩) ଯଦି ଧର୍ମର ଅନୁଷ୍ଠାନ କାମନା ତ୍ୟାଗକରି କରାଯାଏ, ତେବେ ସେ ଅନ୍ତଃକରଣ ଶୁଦ୍ଧକରି ମୁକ୍ତ କରାଇ ଦିଏ । ସେହିଭଳି ଯଦି ଧନକୁ-କାମନା ତ୍ୟାଗ ପୂର୍ବକ ଅନ୍ୟର ଉପକାରରେ, ହିତରେ, ସୁଖରେ ଖର୍ଚ୍ଚ କରାଯାଏ, ତେବେ ସେହି ଧନ ଅନ୍ତଃକରଣ ଶୁଦ୍ଧକରି ମୁକ୍ତ କରିଦିଏ ।

ଅର୍ଥ, ଧର୍ମ, କାମ ଏବଂ ମୋକ୍ଷ-ଏହି ଚାରିଗୋଟି ମଧ୍ୟରୁ 'ଅର୍ଥ' (ଧନ) ଏବଂ କାମ (ଭୋଗ) ର ପ୍ରାପ୍ତିରେ ପ୍ରାରବ୍ଧର ମୁଖ୍ୟତା ଏବଂ ପୁରୁଷାର୍ଥର ଗୌଣତା ତଥା ଧର୍ମ ଓ ମୋକ୍ଷ ପ୍ରାପ୍ତିରେ ପୁରୁଷାର୍ଥର ମୁଖ୍ୟତା ଏବଂ ପ୍ରାରବ୍ଧର ଗୌଣତା ରହିଥାଏ,

ପ୍ରାରବ୍ଧ ଏବଂ ପୁରୁଷାର୍ଥ ଏହି ଦୁଇଟିର କ୍ଷେତ୍ର ଭିନ୍ନ-ଭିନ୍ନ ଅଟେ ଏବଂ ଦୁଇଟି ଯାକ ମଧ୍ୟ ନିଜ-ନିଜ କ୍ଷେତ୍ରରେ ମୁଖ୍ୟ ଅଟନ୍ତି । ଏଥିପାଇଁ କୁହାଯାଇଛି-

**ସନ୍ତୋଷ ସ୍ତ୍ରୀଷୁ କର୍ତ୍ତବ୍ୟଃ ସ୍ୱଦାରେ ଭୋଜନେ ଧନେ ।**
**ତ୍ରିଷୁ ଚୈବ ନ କର୍ତ୍ତବ୍ୟଃ ସ୍ୱାଧ୍ୟାୟେ ଜପଦାନୟୋଃ ।।**

ଅର୍ଥାତ୍ ପ୍ରାପ୍ତ ହୋଇଥିବା ନିଜର ସ୍ତ୍ରୀ, ପୁତ୍ର, ପରିବାର, ଭୋଜନ ଏବଂ ଧନରେ ସନ୍ତୋଷ ହେବା ଦରକାର କିନ୍ତୁ ସ୍ୱାଧ୍ୟାୟ, ପୂଜା-ପାଠ, ନାମଜପ, କୀର୍ତ୍ତନ ଏବଂ ଦାନ କରିବାରେ କେବେ ହେଲେ ସନ୍ତୋଷ ହେବା ଉଚିତ୍ ନୁହେଁ । ତାତ୍ପର୍ଯ୍ୟ ହେଉଛିକି ପ୍ରାରବ୍ଧର ଫଳ ଧନ ଏବଂ ଭୋଗରେ ସନ୍ତୋଷ ହେବା ଦରକାର, କାହିଁକିନା ତାହା ପ୍ରାରବ୍ଧ ଅନୁସାରେ ଯେତିକି ମିଳିବାର ଅଛି ସେତିକି ହିଁ ମିଳିବ, ସେଥିରୁ ଅଧିକ ମିଳିବନାହିଁ । କିନ୍ତୁ ଧର୍ମର ଅନୁଷ୍ଠାନ ଏବଂ ନିଜର କଲ୍ୟାଣ କରିବାରେ, କେବେ ହେଲେ ମଧ୍ୟ ସନ୍ତୋଷ ହେବା କଥା ନୁହେଁ, କାହିଁକିନା ଏହା ନୂଆ ପୁରୁଷାର୍ଥ ଅଟେ, ଏବଂ ଏହି ପୁରୁଷାର୍ଥ ପାଇଁ ହିଁ ମନୁଷ୍ୟ ଶରୀର ମିଳିଛି ।

କର୍ମରେ ଦୁଇଟି ଭେଦ ଅଛି । ଶୁଭ-ଅଶୁଭ ବା ପୁଣ୍ୟ-ପାପ । ଶୁଭ କର୍ମର ଫଳ ଅନୁକୂଳ ପରିସ୍ଥିତି ରୂପେ ପ୍ରାପ୍ତହୁଏ ଏବଂ ଅଶୁଭ କର୍ମର ଫଳ ପ୍ରତିକୂଳ ପରିସ୍ଥିତି ରୂପେ । କର୍ମ ବାହାରରେ କରାଯାଏ, ତେଣୁ ସେହି କର୍ମର ଫଳ ମଧ୍ୟ ବାହ୍ୟ ପରିସ୍ଥିତି ରୂପରେ ହିଁ ମିଳେ । କିନ୍ତୁ ସେହି ପରିସ୍ଥିତିର ପ୍ରାପ୍ତିରେ ଯେଉଁ ସୁଖ-ଦୁଃଖ ହୋଇଥାଏ ତାହା ଭିତରେ (ହୃଦୟରେ) ହୁଏ । ସୁତରାଂ ସେହି ପରିସ୍ଥିତି ଗୁଡ଼ିକରେ ସୁଖୀ ବା ଦୁଃଖୀ ହେବା ଶୁଭାଶୁଭ କର୍ମର ଅର୍ଥାତ୍ ପ୍ରାରବ୍ଧ ଫଳ ନୁହେଁ, ବରଂ ନିଜ ମୂର୍ଖତାର ଫଳ ଅଟେ । ଯଦିଓ ସେହି ମୂର୍ଖତା ଦୂର ହୋଇଯିବ,ଭଗବାନଙ୍କ ଉପରେ* ଅଥବା ପ୍ରାରବ୍ଧ

---

*ଲାଳନେ ତାଡ଼ନେ ମାତୁର୍ନାକାରୁଣ୍ୟ ଯଥାର୍ଭକେ ।
ତଦ୍ୱଦେବ ମହେଶସ୍ୟ ନିୟନ୍ତୁର୍ଗୁଣଦୋଷୟୋଃ ।।

ଯେଉଁଭଳି ସନ୍ତାନକୁ ଲାଳନ-ପାଳନ ଏବଂ ତାଡନା କରିବା ଏହି ଦୁଇଟିରେ ମା'ଙ୍କ ର ଅକୃପା ପରିଲକ୍ଷିତ ହୋଇନଥାଏ, ସେହିଭଳି ଜୀବ ମାନଙ୍କର ଗୁଣ-ଦୋଷକୁ ନିୟନ୍ତ୍ରଣ କରୁଥିବା ପରମେଶ୍ୱରଙ୍କର କୃପା କେବେବି କାହା ଉପରେ ଊଣା ହୁଏନାହିଁ ।

$ଯଦ୍ଭାବି ତଦ୍ଭବତ୍ୟେବ ଯଦଭାବ୍ୟଂ ନ ତଦ୍ଭବେତ୍ ।
ଇତି ନିଶ୍ଚିତବୁଦ୍ଧୀନାଂ ନ ଚିନ୍ତା ବାଧତେ କ୍ୱଚିତ୍ ।।

(ନାରଦ ପୁରାଣ, ପୂର୍ବ ୩୭ ।୪୭)

ଉପରେ $ ବିଶ୍ୱାସ ହୋଇଯିବ, ତେବେ ପ୍ରତିକୂଳ-ରୁ-ପ୍ରତିକୂଳ ପରିସ୍ଥିତି ଆସିଲେ ମଧ୍ୟ ଚିତ୍ତରେ ପ୍ରସନ୍ନତା ହେବ । କାରଣ କି ପ୍ରତିକୂଳ-ପରିସ୍ଥିତି ଦ୍ୱାରା ପାପ କଟିଯାଏ । ଆଗକୁ ପୁଣି ପାପ ନ କରିବା ପାଇଁ ସତର୍କତା ମଧ୍ୟ ମିଳେ, ଏବଂ ପାପଗୁଡ଼ିକ ନଷ୍ଟ ହୋଇଯିବାଦ୍ୱାରା ଅନ୍ତଃ କରଣରେ ଶୁଦ୍ଧତା ଓ ପବିତ୍ରତା ଆସିଥାଏ ।

ସାଧକକୁ ଅନୁକୂଳ ଏବଂ ପ୍ରତିକୂଳ ପରିସ୍ଥିତିର ସଦୁପଯୋଗ କରିବା ଉଚିତ୍, ନାକି ଦୁରୁପଯୋଗ । ଅନୁକୂଳ ପରିସ୍ଥିତି ଆସିଗଲା ତ ଅନୁକୂଳ ସାମଗ୍ରୀ (ପଦାର୍ଥଆଦି)କୁ ଅନ୍ୟର ହିତପାଇଁ ସେବା ବୁଦ୍ଧିରେ ଖର୍ଚ୍ଚ କରିବା, ଅନୁକୂଳ ପରିସ୍ଥିତିର ସଦୁପଯୋଗ ଏବଂ ତାହାକୁ ସୁଖ-ବୁଦ୍ଧିରେ ଭୋଗ କରିବା, ଦୁରୁପଯୋଗ ଅଟେ । ସେହିଭଳି ପ୍ରତିକୂଳ ପରିସ୍ଥିତି ଆସିଗଲା ତ ସୁଖଇଛା ତ୍ୟାଗକରି ଏପରି ଭାବିବା ଆବଶ୍ୟକ କି, ମୋର ପୂର୍ବକୃତ ପାପ ଗୁଡ଼ିକୁ ନଷ୍ଟ କରିବା ପାଇଁ, ଭବିଷ୍ୟତରେ ଆଉ ପାପ ନକରି ସାବଧାନତା ରକ୍ଷା କରିବା ପାଇଁ ଏବଂ ମୋର ଉନ୍ନତି କରିବା ପାଇଁ ହିଁ ପରମକୃପାଳୁ ପ୍ରଭୁ କୃପାକରି ଏହି ପରିସ୍ଥିତି ସୃଷ୍ଟି କରିଛନ୍ତି । ଏହା ବୁଝି ପରମ ପ୍ରସନ୍ନ ରହିବା ପ୍ରତିକୂଳ ପରିସ୍ଥିତିର ସଦୁପଯୋଗ, ଏବଂ ସେଥିରେ ଦୁଃଖିତ ହେବା ଦୁରୁପଯୋଗ ଅଟେ ।

ମନୁଷ୍ୟ-ଶରୀର ସୁଖ-ଦୁଃଖ ଭୋଗିବା ପାଇଁ ମିଳିନାହିଁ । ସୁଖ ଭୋଗର ସ୍ଥାନ ସ୍ୱର୍ଗାଦି ଉଚ୍ଚଲୋକ ଏବଂ ଦୁଃଖ ଭୋଗର ସ୍ଥାନ ନରକ ତଥା ଚୌରାଶୀଲକ୍ଷ ଯୋନି ଅଟେ । ଏଥିପାଇଁ ସେସବୁ ଭୋଗଯୋନି ଏବଂ ମନୁଷ୍ୟ କର୍ମଯୋନି ଅଟେ । କିନ୍ତୁ ଏହା କର୍ମଯୋନି ସେହିମାନଙ୍କ ପାଇଁ, ଯେଉଁମାନେ ମନୁଷ୍ୟ ଶରୀରରେ ସାବଧାନତା ରକ୍ଷା କରନ୍ତିନାହିଁ । କେବଳ ଜନ୍ମ-ମରଣର ସାମାନ୍ୟ ପ୍ରବାହରେ ଘୁରିବୁଲନ୍ତି । ବାସ୍ତବରେ ମନୁଷ୍ୟ ଶରୀର ସୁଖ-ଦୁଃଖରୁ ଉଚ୍ଚକୁ ଉଠିବା ପାଇଁ ଅର୍ଥାତ୍ ମୁକ୍ତି ପ୍ରାପ୍ତିପାଇଁ ମିଳିଛି । ଅତଏବ ଏହାକୁ କର୍ମଯୋନି ନକହି କେବଳ ସାଧନଯୋନି ହିଁ କହିବା ଯଥାର୍ଥ ।

ପ୍ରାରବ୍ଧ-କର୍ମଗୁଡ଼ିକର ଫଳ ସ୍ୱରୂପ ଯେଉଁ ଅନୁକୂଳ ଏବଂ ପ୍ରତିକୂଳ ପରିସ୍ଥିତି ଆସେ, ଏଥି ମଧ୍ୟରୁ ଅନୁକୂଳ ପରିସ୍ଥିତିକୁ ପ୍ରତ୍ୟକ୍ଷ ରୂପେ ତ୍ୟାଗ

**ଯାହା ହେବାର ଅଛି ତାହା ଅବଶ୍ୟ ହେବ, ଏବଂ ଯାହା ହେବାର ନାହିଁ ତାହା କେବେ ମଧ୍ୟ ହେବ ନାହିଁ-ଏହି ନିଶ୍ଚିତତା ଯାହାର ବୁଦ୍ଧିରେ ପ୍ରକଟ ହୁଏ, ତାକୁ ଚିନ୍ତା ତେବେ ସନ୍ତାପିତ କରେନାହିଁ ।**

କରିବାରେ ତ ମନୁଷ୍ୟ ସ୍ୱତନ୍ତ୍ର, କିନ୍ତୁ ପ୍ରତିକୂଳ ପରିସ୍ଥିତିକୁ ସ୍ୱରୂପରେ (ପ୍ରତ୍ୟକ୍ଷରେ) ତ୍ୟାଗ କରିବାପାଇଁ ମନୁଷ୍ୟ ପରତନ୍ତ୍ର ଅଟେ, ଅର୍ଥାତ୍ ତାକୁ ପ୍ରତ୍ୟକ୍ଷରେ ତ୍ୟାଗ କରିହୁଏନା । କାରଣ ଏହିକି, ଅନୁକୂଳ ପରିସ୍ଥିତି ଅନ୍ୟର ହିତ କରିଥିବା ହେତୁ, ଅନ୍ୟକୁ ପ୍ରତ୍ୟକ୍ଷରେ ସୁଖ ଦେଇଥିବାହେତୁ ପ୍ରସ୍ତୁତ ହୋଇଛି ଏବଂ ପ୍ରତିକୂଳ ପରିସ୍ଥିତି ଅନ୍ୟକୁ ପ୍ରତ୍ୟକ୍ଷରେ ଦୁଃଖ ଦେଇଥିବା ହେତୁହିଁ ପ୍ରସ୍ତୁତ ହୋଇଛି । ଏହାକୁ ଆମେ ଏକ ଦୃଷ୍ଟାନ୍ତ ଦ୍ୱାରା ବୁଝିପାରିବା ।

ଶ୍ୟାମବାବୁ ରାମବାବୁଙ୍କୁ ୧୦୦ଟଙ୍କା ଉଧାର ଦେଇଥିଲେ । ରାମବାବୁ ଜବାବ ଦେଇଥିଲେକି ଅମୁକ ମାସକୁ ମୁଁ ସୁଧସହିତ ସବୁ ଟଙ୍କା ଫେରାଇ ଦେବି । କଣ୍ଟ ଦେଇଥିବା ମାସ ବିତିଗଲା, କିନ୍ତୁ ରାମବାବୁ ଟଙ୍କା ଫେରାଇଲେ ନାହିଁ । ସେଇଠୁ ଶ୍ୟାମବାବୁ ରାମବାବୁଙ୍କ ଘରେ ପହଞ୍ଚିଲେ, କହିଲେ ରାମବାବୁ- 'ତୁମେ ତ ଜବାବ ଅନୁସାରେ ଟଙ୍କା ଫେରାଇଲ ନାହିଁ, ବର୍ତ୍ତମାନ୍ ଦିଅ ।' ରାମବାବୁ କହିଲେ- ବର୍ତ୍ତମାନ ମୋ ପାଖରେ ଟଙ୍କା ନାହିଁ, ପହରିଦିନ ଦେଇଦେବି । ଶ୍ୟାମବାବୁ ତୃତୀୟ ଦିନ ପହଞ୍ଚିଲେ ଏବଂ କହିଲେ- ମୋର ଟଙ୍କା ଦିଅ । ରାମବାବୁ କହିଲେ-ବର୍ତ୍ତମାନ ମୁଁ ଆପଣଙ୍କ ଟଙ୍କା ଏକାଠି କରିପାରି ନାହିଁ । ପହରିଦିନ ଆପଣଙ୍କ ଟଙ୍କା ନିଶ୍ଚୟ ଦେଇଦେବି । ସେଦିନ ପୁଣି ଶ୍ୟାମବାବୁ ତାଙ୍କ ଘରେ ପହଞ୍ଚିଲେ-ଏବଂ କହିଲେ ଟଙ୍କାଦିଅ, ସେଇଠୁ ରାମବାବୁ କହିଲେ -କାଲି ନିଶ୍ଚୟ ଦେବି । ସେଦିନ ମଧ୍ୟ ଶ୍ୟାମବାବୁ ପହଞ୍ଚିଲେ- ଏବଂ ଟଙ୍କା ମାଗିଲେ । ରାମବାବୁ କହିଲେ ' ଟଙ୍କା ଜୁଟିଲାନି' ଏବଂ ମୋପାଖରେ ମଧ୍ୟ ଟଙ୍କାନାହିଁ, କେଉଁଠୁ ଆଣିବି? ପହରିଦିନ ଆସ । ରାମବାବୁଙ୍କ କଥାଶୁଣି ଶ୍ୟାମବାବୁଙ୍କୁ କ୍ରୋଧ ଆସିଗଲା ଏବଂ ଟଙ୍କା ଦେବାର ନାହିଁ ଖାଲି କାଲି-ପହରି କହୁଛି- ଏହାକହି ସେ ରାମବାବୁଙ୍କୁ ୫ଜୋତା ମାରିଲେ । ରାମବାବୁ କୋର୍ଟରେ ମୋକଦମା କରିଦେଲେ । ଶ୍ୟାମବାବୁଙ୍କୁ ଡ଼କାଯାଇ ପଚରାଗଲା-'ତୁମେ ଏହାର ଘରକୁ ଯାଇ ଜୋତା ମାରିଛ ? 'ସେଠୁ ଶ୍ୟାମବାବୁ କହିଲେ-ଆଜ୍ଞା ହଁ, ମୁଁ ଜୋତା ମାରିଛି । ମାଜିଷ୍ଟ୍ରେଟ୍ ପଚ୍ଚାରିଲେ-କାହିଁକି ମାରିଲ? ଶ୍ୟାମବାବୁ କହିଲେ- ଏହାକୁ ମୁଁ ଟଙ୍କା ଦେଇଥିଲି ଏବଂ ଏ ଜବାବ କରିଥିଲା କି ମୁଁ ଏଇ ମାସରେ ଟଙ୍କା ଫେରାଇ ଦେବି । ମାସ ବିତିଯିବା ପରେ ମୁଁ ତା ଘରକୁ ଯାଇ ଟଙ୍କା ମାଗିଲାବେଳକୁ ସେ ମୋତେ କାଲି-ପହରି, କାଲି-ପହରି କହି ବହୁତ

ହଇରାଣ କଲା । ତା ଉପରେ ମୋର କ୍ରୋଧ ଆସିବାରୁ ମୁଁ ଜୋତା ମାରିଛି । ତେବେ ବାବୁ! ଆପଣ ୫ଜୋତାର ୫ଟଙ୍କା କାଟି ଅବଶିଷ୍ଟ ପଇସା ମୋତେ ଫେରାଇ ଦିଅନ୍ତୁ ।

ମାଜିଷ୍ଟ୍ରେଟ୍ ହସି-ହସି କହିଲେ'ଏହା ଫୌଜଦାରୀ (Criminal Court) କୋର୍ଟ । ଏଠାରେ ଟଙ୍କା ଦେବାର ବିଧାନ ନାହିଁ, ଏଠାରେ ତ କେବଳ ଦଣ୍ଡ ଦେବାର ବିଧାନ ଅଛି । ଏଣୁ ଆପଣଙ୍କୁ ଜୋତାମାରିବା ବଦଳରେ ଜୋରିମାନା ଦେବାକୁ ପଡ଼ିବ ଓ ଦଣ୍ଡଭୋଗିବାକୁ ପଡ଼ିବ । ଯଦି ଆପଣଙ୍କୁ ଟଙ୍କା ନେବାର ଅଛି, ତେବେ ଦିୱାନୀ(Civil) କୋର୍ଟରେ ଯାଇ ନାଲିସ୍ କର (ଜଣାଅ), ସେଠାରେ ଟଙ୍କା ଦେବାର ବ୍ୟବସ୍ଥା ରହିଛି; କାହିଁକି ନା ପ୍ରତ୍ୟେକ ବିଭାଗ ଅଲଗା-ଅଲଗା ଅଟେ' ।

ଏହିଭଳି ଅଶୁଭ କର୍ମସମୁହର ଫଳ, ଯାହାକି ପ୍ରତିକୂଳ ପରିସ୍ଥିତିରୂପେ ମିଳେ ତାହା ଫୌଜଦାରୀ ଅଟେ । ଏଣୁ ତାହାକୁ ସ୍ୱରୂପରେ ତ୍ୟାଗ କରିହୁଏନାହିଁ ଏବଂ ଶୁଭକର୍ମର ଫଳ, ଯାହାକି ଅନୁକୂଳ ପରିସ୍ଥିତି ରୂପେମିଳେ, ତାହା ଦିୱାନୀ ଅଟେ, ତେଣୁ ତାକୁ ସ୍ୱରୂପରେ (ପ୍ରତ୍ୟକ୍ଷରେ) ତ୍ୟାଗ କରାଯାଇପାରେ । ଏଥିରୁ ଏହା ସିଦ୍ଧହେଲା କି, ମନୁଷ୍ୟକୁ ମିଳୁଥିବା ଶୁଭ-ଅଶୁଭ କର୍ମର ବିଭାଗ ଭିନ୍ନ-ଭିନ୍ନ ଅଟେ । ସୁତରାଁ ଶୁଭକର୍ମ(ପୁଣ୍ୟ) ଏବଂ ଅଶୁଭକର୍ମ(ପାପ) ଅଲଗା-ଅଲଗା ସଂଗ୍ରହ ହୋଇଥାଏ । ସ୍ୱାଭାବିକ ଏହି ଦୁଇଟି ଗୋଟିଏ ଅନ୍ୟଟିରେ କଟେ ନାହିଁ । ଅର୍ଥାତ୍ ପାପଦ୍ୱାରା ପୁଣ୍ୟ କଟେନାହିଁ, କି ପୁଣ୍ୟଦ୍ୱାରା ପାପ କଟେ ନାହିଁ । ହଁ, ଯଦି ମନୁଷ୍ୟ ପାପ କାଟିବା ଉଦ୍ଦେଶ୍ୟରେ (ପ୍ରାୟଶ୍ଚିତ୍ତଦ୍ୱାରା) ଶୁଭକର୍ମ କରେ, ତେବେ ତାର ପାପ କଟିଯାଇପାରେ ।

ସଂସାରରେ ଜଣେ ବ୍ୟକ୍ତି ପୁଣ୍ୟାତ୍ମା ଓ ସଦାଚାରୀ, କିନ୍ତୁ ସେ ଦୁଃଖଭୋଗ କରୁଛି । ଅପରପକ୍ଷେ ଅନ୍ୟଜଣେ ପାପାତ୍ମା ଓ ଦୁରାଚାରୀ ଅଟେ, ସେ ସୁଖଭୋଗ କରୁଛି- ଏହି କଥାକୁ ନେଇ ଶ୍ରେଷ୍ଠ-ଶ୍ରେଷ୍ଠ ମନୁଷ୍ୟଙ୍କ ହୃଦୟରେ ମଧ୍ୟ ଏଭଳି ଶଙ୍କା ଉତ୍ପନ୍ନ ହୋଇଯାଏ କି, ଏଥିରେ ଈଶ୍ୱରଙ୍କର ନ୍ୟାୟ କାହିଁ ?*ଏହାର

*ମହାଭାରତ ବନପର୍ବରେ ଗୋଟିଏ କଥା ଆସେ । ଦିନେ ଦ୍ରୌପଦି ମହାରାଜ ଯୁଧିଷ୍ଠିରଙ୍କୁ କହିଲେ କି ଆପଣ ଧର୍ମକୁ ଛାଡ଼ି ଗୋଟିଏ ପାଦ ମଧ୍ୟ ଆଗକୁ ପକାଉ ନାହାନ୍ତି, କିନ୍ତୁ ଆପଣ ବନବାସରେ ଦୁଃଖ ଭୋଗକରୁଛନ୍ତି ଏବଂ ଦେଖ ଦୁର୍ଯ୍ୟୋଧନ ଧର୍ମକୁ ତିଳେମାତ୍ର ଖାତିରି ନକରି କେବଳ

**********************************

ସମାଧାନ ଏହିକି, ବର୍ତ୍ତମାନ ପୁଣ୍ୟାତ୍ମା ଯେଉଁ ଦୁଃଖ ପାଉଛି, ତାହା ପୂର୍ବରୁ କରିଥିବା ପାପର ଫଳ ଅଟେ, ବର୍ତ୍ତମାନ କରିଥିବା ପୁଣ୍ୟର ନୁହେଁ । ସେହିଭଳି ପାପାତ୍ମା ଯେଉଁ ସୁଖଭୋଗ କରୁଛି, ତାହା ମଧ୍ୟ ପୂର୍ବରୁ କୌଣସି ଜନ୍ମରେ କରିଥିବା ପୁଣ୍ୟରଫଳ ଅଟେ, ବର୍ତ୍ତମାନ କରିଥିବା ପାପର ନୁହେଁ ।

ଏଥିରେ ଆଉ ଗୋଟିଏ ତାତ୍ତ୍ୱିକକଥା ମଧ୍ୟ ଅଛି । କର୍ମର ଫଳସ୍ୱରୂପ ଯେଉଁ ଅନୁକୂଳ ପରିସ୍ଥିତି ଆସୁଅଛି, ସେଥିରେ କେବଳ ସୁଖ ହିଁ ହୁଏ ଏବଂ ଯେଉଁ ପ୍ରତିକୂଳ ପରିସ୍ଥିତି ଆସୁଛି ସେଥିରେ ଯେ କେବଳ ଦୁଃଖ ହୁଏ- ଏକଥା ନୁହେଁ । ଯଥା- ଅନୁକୂଳ ପରିସ୍ଥିତି ଆସିବା ଦ୍ୱାରା ମନରେ ଅଭିମାନ ଜାତହୁଏ, ନୀଚ ଲୋକଙ୍କ ପ୍ରତି ଘୃଣାଭାବ ହୁଏ, ନିଜଠାରୁ ଅଧିକ ସମ୍ପତ୍ତିଦାର ଲୋକଙ୍କୁ ଦେଖି ତାଙ୍କପ୍ରତି ଇର୍ଷା ହୁଏ, ଅସହିଷ୍ଣୁତା ହୁଏ, ଅନ୍ତଃକରଣରେ ଅଶାନ୍ତି ସୃଷ୍ଟିହୁଏ, ଏବଂ ମନରେ ଏଭଳି ଦୁର୍ଭାବଆସେ କି ତାର ସମ୍ପତ୍ତି କେମିତି ନଷ୍ଟ ହୋଇଯାଉ, ଓ ସମାଜର ଲୋକ ଚକ୍ଷୁରେ ସମସ୍ତେ ତାକୁ ନୀଚ ଦୃଷ୍ଟିରେ ଦେଖନ୍ତୁ, ଏହିଭଳି ଅନେକ ଅମାନୁଷିକ ଭାବନାସୃଷ୍ଟି ହୁଏ । ସୁତରାଂ ସୁଖସାମଗ୍ରୀ ଏବଂ ଧନ ସମ୍ପତ୍ତି ପାଖରେ ଥିଲେ ମଧ୍ୟ ସେ ସୁଖି ହୋଇପାରେ ନାହିଁ । କିନ୍ତୁ ବାହାରର ସୁଖ ସାମଗ୍ରୀକୁ ଦେଖି ଲୋକମାନଙ୍କର ଏହିପରି ଭ୍ରମ ହୋଇଥାଏ କି ଏ ବଡ଼ ସୁଖୀ ଅଟେ । ସେହିଭଳି କୌଣସି ବିରକ୍ତ ବା ତ୍ୟାଗୀ ସନ୍ଥଙ୍କୁ ଦେଖି ଭୋଗ-ସାମଗ୍ରୀରେ ବୁଡ଼ିଥିବା ମନୁଷ୍ୟଙ୍କ ମନରେ ସେମାନଙ୍କ ପ୍ରତି ଦୟା ଆସେ, କି ବିଚରା ପାଖରେ ଧନ-ସମ୍ପତ୍ତି ଇତ୍ୟାଦି କିଛିନାହିଁ, ବିଚରା ବଡ଼ ଦୁଃଖରେ ଜୀବନ କଟାଉଛି ! ପରନ୍ତୁ ବାସ୍ତବରେ ବିରକ୍ତ ତ୍ୟାଗୀଙ୍କ ମନରେ ଅତ୍ୟନ୍ତ ଶାନ୍ତି ତଥା ଯଥେଷ୍ଟ ପ୍ରସନ୍ନତା ଥାଏ । ସେହି ପ୍ରସନ୍ନତା ଏବଂ ଶାନ୍ତି, ଧନଥାଇ ମଧ୍ୟ ଧନୀ ପାଖରେ ନ ଥାଏ । ଅତଏବ ଧନ ଅଧିକ ଥିଲେ ଯେ ସୁଖହୁଏ- ଏକଥା ନୁହେଁ । ଏବଂ ଧନର ଅଭାବରେ ଯେ ଦୁଃଖ ହୁଏ-ଏକଥା ମଧ୍ୟ ନୁହେଁ । ସୁଖର ଅର୍ଥ ହୃଦୟରେ

---

ସ୍ୱାର୍ଥ ପରାୟଣ ହୋଇ ମଧ୍ୟ, ସେ ରାଜ୍ୟ କରୁଛି, ଆରାମରେ ରହି ସୁଖଭୋଗ କରୁଛି ? ଏହିଭଳି ଶଙ୍କା କରିବା ଦ୍ୱାରା ମହାରାଜ ଯୁଧିଷ୍ଠିର କହିଲେ, କି ଯିଏ ସୁଖପାଇବା ଇଚ୍ଛାରେ ଧର୍ମ ପାଳନ କରୁଛି, ସିଏ ବାସ୍ତବରେ ଧର୍ମର ତତ୍ତ୍ୱକୁ ଜାଣେନାହିଁ ! ସେ ତ ପଶୁଙ୍କ ଭଳି ସୁଖ-ଭୋଗପାଇଁ ଲୋଲୁପ, ଏବଂ ଦୁଃଖକୁ ଭୟ କରେ, ପୁଣି ବିଚରା ଧର୍ମର ତତ୍ତ୍ୱକୁ ଜାଣିବ ବା କେମିତି ? ଅତଏବ ଅନୁକୂଳ ଏବଂ ପ୍ରତିକୂଳ ପରିସ୍ଥିତିକୁ ତିଳେମାତ୍ର ଖାତିରି ନ କରି ଶାସ୍ତ୍ରର ଆଜ୍ଞାନୁସାରେ କେବଳ ନିଜ ଧର୍ମ (କର୍ତ୍ତବ୍ୟ)ର ପାଳନ କରିବାରେ ହିଁ ମନୁଷ୍ୟର ମନୁଷ୍ୟପଣିଆ ନିହିତ ଅଛି ।

ଶାନ୍ତି ଏବଂ ପ୍ରସନ୍ନତା, ଓ ଦୁଃଖର ଅର୍ଥ ହୃଦୟର ଅଶାନ୍ତି ଏବଂ ସନ୍ତାପ ଅଟେ ।

ପୁଣ୍ୟ ଏବଂ ପାପର ଫଳ ଭୋଗିବାରେ କୌଣସି ନିର୍ଦ୍ଦିଷ୍ଟ ନିୟମ ନାହିଁ । ପୁଣ୍ୟ ତ ନିଷ୍କାମ ଭାବରେ ଭଗବାନଙ୍କୁ ଅର୍ପଣ କରିବା ଦ୍ୱାରା ସମାପ୍ତ ହୋଇଯାଏ, କିନ୍ତୁ ପାପ ଭଗବାନଙ୍କୁ ଅର୍ପଣ କରିବା ଦ୍ୱାରା ସମାପ୍ତ ହୁଏନାହିଁ । ପାପର ଫଳ ତ ନିଶ୍ଚିନ୍ତ ରୂପେ ଭୋଗିବାକୁ ହିଁ ପଡ଼ିଥାଏ, କାହିଁକି ନା ଭଗବାନଙ୍କ ଆଜ୍ଞାର ବିରୁଦ୍ଧରେ କରାଯାଇଥିବା କର୍ମ ଭଗବାନଙ୍କର ଅର୍ପଣ କିପରି ହୋଇପାରିବ? ଏବଂ ଅର୍ପଣ କରୁଥିବା ବ୍ୟକ୍ତି ମଧ୍ୟ ଭଗବାନଙ୍କ ଆଜ୍ଞାର ବିରୁଦ୍ଧ କର୍ମକୁ କିପରି ତାଙ୍କୁ ଅର୍ପଣ କରିବ? ବରଂ ଭଗବାନଙ୍କ ଆଜ୍ଞା ଅନୁସାରେ କରାଯାଇଥିବା କର୍ମ ହିଁ ତାଙ୍କୁ ଅର୍ପଣ କରାଯାଇ ପାରିବ । ଏ ବିଷୟରେ ଏକ ଘଟଣା ମନେ ପଡୁଛି ।

ଜଣେ ରାଜା ନିଜର ପ୍ରଜାମାନଙ୍କ ସହିତ ହରିଦ୍ୱାର ଯାଇଥିଲେ । ତାଙ୍କ ସାଥିରେ ସବୁ ପ୍ରକାରର ଲୋକଥିଲେ । ସେଥିରେ ଜଣେ ଚମାର ମଧ୍ୟ ଥିଲା । ସେ ସେଠାରେ ବଡ଼-ବଡ଼ ଧନୀ ବ୍ୟକ୍ତି ମାନଙ୍କୁ ଦେଖି ଭାବିଲା କି ଏମାନେ ତ ବଡ଼ ଚତୁର ଅଟନ୍ତି, ନିଜର ବୁଦ୍ଧିବଳରେ ଏମାନେ ସବୁ ଧନୀ ହୋଇଛନ୍ତି । ଯଦି ମୁଁ ଏମାନଙ୍କର ବୁଦ୍ଧିକୁ ଲକ୍ଷ୍ୟକରି କାର୍ଯ୍ୟ କରିବି, ତେବେ ମୁଁ ମଧ୍ୟ ଧନୀ ହୋଇଯିବି । ଏହାଭାବି ସେଜଣେ ଚତୁର ବୁଦ୍ଧିମାନ ଧନୀର କାର୍ଯ୍ୟ ଉପରେ ଲକ୍ଷ୍ୟରଖି ଗ୍ଲିଲା । ଯେତେବେଳେ ହରିଦ୍ୱାର ବ୍ରହ୍ମକୁଣ୍ଡରେ ପଣ୍ଡା ଦାନ ପୁଣ୍ୟର ସଂକଳ୍ପ କରିବାକୁ ଲାଗିଲେ, ସେଠାରେ ଧନୀବ୍ୟକ୍ତି ଜଣଙ୍କ ଶଙ୍ଖରେ ଜଳଧରି କହିଲେ-"ମୁଁ ଅମୁକ ବ୍ରାହ୍ମଣକୁ ୧୦୦ଟଙ୍କା ଉଧାର ଦେଇଥିଲି, ଆଜି ମୁଁ ସେ ଟଙ୍କାକୁ ଦାନ ରୂପରେ ଶ୍ରୀ କୃଷ୍ଣାର୍ପଣ କରୁଛି ।" ପଣ୍ଡା ମଧ୍ୟ ସଂକଳ୍ପ କରିଦେଲେ । ସେଠାରେ ଛିଡ଼ାହୋଇ ଚମାର ସବୁକଥା ଦେଖୁଥିଲା, ଏକଥା ଦେଖି ସେ ଭାବିଲା କି ଏ ଏକ କଉଡ଼ି ମଧ୍ୟ ଦେଲାନାହିଁ, କିନ୍ତୁ ଲୋକ ଚକ୍ଷୁରେ ପ୍ରସିଦ୍ଧ ହୋଇଗଲା କି୧୦୦ଟଙ୍କା ଦାନ କରିଦେଲା ବୋଲି । ଇଏ ତ କମ୍ ବୁଦ୍ଧିମାନ୍ ନୁହେଁ ! ମୁଁ ମଧ୍ୟ ତା ଠାରୁ ନ୍ୟୁନରେ କାହିଁକି ରହିବି । ଯେତେବେଳେ ପଣ୍ଡା ଚମାରକୁ ସଂକଳ୍ପ କରିବାକୁ କହିଲେ, ସେତେବେଳେ ଚମାର କହିଲା କି-"ଅମୁକ ଧନୀ ମୋତେ ୧୦୦ଟଙ୍କା ଉଧାର ଦେଇଥିଲା ମୁଁ ତାକୁ କୃଷ୍ଣାର୍ପଣ କରି ଦେଉଛି ।" ତାର ଗାଉଁଲି ଭାଷାକୁ ପଣ୍ଡା

ଭଲଭାବେ ବୁଝି ପାରିଲେ ନାହିଁ, ସଂକଳ୍ପ କରିଦେଲେ । ଏଥିରେ ଚମାର ବହୁତ ଖୁସିହୋଇଗଲା କି ମୁଁ ମଧ୍ୟ ଧନିବ୍ୟକ୍ତି ଭଳି ୧୦୦ଟଙ୍କା ଦାନ-ପୁଣ୍ୟ କରିଦେଲି !

ସମସ୍ତେ ନିଜ-ନିଜଘରେ ପହଞ୍ଚିଲେ । ସମୟାନୁସାରେ ଚାଷ-ବାସ ହେଲା, ବ୍ରାହ୍ମଣ ଏବଂ ଚମାର ଉଭୟଙ୍କ ଜମିରେ ବହୁତ ଫସଲ ଆମଦାନୀ ହେଲା, ବ୍ରାହ୍ମଣ ଦେବ ଧନୀକୁ କହିଲେ- "ସେଠ! ଆପଣଙ୍କଠାରୁ ଆଣିଥିବା ୧୦୦ଟଙ୍କାର ବିହନ ଆପଣ ନେଇନିଅନ୍ତୁ, ଯଦ୍ଦ୍ୱାରା ଆପଣଙ୍କର ଲାଭହେବ ଏବଂ ମୁଁ ମଧ୍ୟ ଋଣମୁକ୍ତ ହୋଇଯିବି ।" ଧନିବ୍ୟକ୍ତି କହିଲେ-'ହେ ବ୍ରାହ୍ମଣ ଦେବତା ! ଯେତେବେଳେ ମୁଁ ହରିଦ୍ୱାର ଯାଇଥିଲି, ଆପଣଙ୍କୁ ଉଧାର ଦେଇଥିବା ଟଙ୍କାକୁ ମୁଁ ଦାନରୂପେ ସଂକଳ୍ପ କରିକୃଷ୍ଣାର୍ପଣ କରି ଦେଇଛି ।' ବ୍ରାହ୍ମଣ କହିଲେ-'ସେଠ! ମୁଁ ଆପଣଙ୍କଠାରୁ ୧୦୦ଟଙ୍କା ଉଧାର ନେଇଥିଲି, ଦାନ ତ ନେଇନଥିଲି । ଏଣୁ ଏ ଟଙ୍କା ରଖିବାକୁ ମୁଁ ଚାହେଁନାହିଁ, ସୁଧ ସହିତ ପୁରା ଦେବାକୁ ଚାହେଁ ।' ସେଠ କହିଲେ-'ଦେବାକୁ ଚାହୁଁଛନ୍ତି ତ ଆପଣ ନିଜର ଭଉଣୀଙ୍କୁ ବା ଝିଅଙ୍କୁ ଦେଇଦିଅନ୍ତୁ । ମୁଁ ତ ଦେଇଥିବା ଟଙ୍କା ଭଗବାନଙ୍କୁ ଅର୍ପଣ କରିଦେଇଛି , ଏଣୁ ମୁଁ ଆଉ ନେବିନାହିଁ ।' ବ୍ରାହ୍ମଣ ଆଉ କରିବେ ବା କଣ? ସେ ନିଜ ଘରକୁ ଚାଲିଗଲେ ।

ବର୍ତ୍ତମାନ ଚମାର ଯେଉଁ ଧନୀଠାରୁ ୧୦୦ଟଙ୍କା ଧାର ଆଣିଥିଲା, ସେହି ଧନୀ ଚମାର କ୍ଷେତରେ ପହଞ୍ଚିଲେ ଏବଂ କହିଲେ-'ଅମୁକ ମୋତେ ମୋର ଟଙ୍କା ଦେ । ତୋର ଫସଲ ହୋଇଛି, ୧୦୦ଟଙ୍କାର ବିହନ ଦେଇ ଦେ' । ଚମାର ବ୍ରାହ୍ମଣ ଏବଂ ଧନୀ କଥା ଶୁଣିଥିଲା, କି ବ୍ରାହ୍ମଣ ଦେବାସତ୍ତ୍ୱେ ବି ଧନୀବ୍ୟକ୍ତି ସେହି ଟଙ୍କାକୁ ସ୍ୱୀକାର କଲେନାହିଁ । ତେଣୁ ସେ ମନରେ ଭାବିଲା କି, ଧନୀଭଳି ମୁଁ ମଧ୍ୟ ସଙ୍କଳ୍ପ କରିଦେଇଛି, ମୋତେ ପୁଣି କାହିଁକି ଦେବାକୁ ପଡ଼ିବ? ଏ କଥାଭାବି ଚମାର ଧନୀକୁ କହିଲା କି-' ମୁଁ ତ ଅମୁକ ଧନୀଭଳି ହରିଦ୍ୱାର ଗଙ୍ଗାରେ ଠିଆହୋଇ ୧୦୦ଟଙ୍କା ଶ୍ରୀକୃଷ୍ଣାର୍ପଣ କରିଦେଇଛି, ପୁଣି ମୋତେ କାହିଁକି ଟଙ୍କା ଦେବାକୁ ପଡିବ?' ଧନୀ ବ୍ୟକ୍ତି କହିଲେ-' ତୁ ଅର୍ପଣ କରିଦେଲେ କରଜ ସୁଝି ଯାଏନା, କାହିଁକି ନା ତୁ ମୋଠାରୁ କରଜ ନେଇଛୁ । ତୁ ଅର୍ପଣ କରିଦେଲେ ତାହା କିପରି ସୁଝିଯିବ? ମୁଁ ତ ମୋର ୧୦୦ଟଙ୍କା ସୁଧ-ମୂଳ ସହିତ ନେବି ; ଦେ ମୋର ଟଙ୍କା !' ଏହା କହି ଧନୀବ୍ୟକ୍ତି ମୋଚିଠାରୁ ନିଜ ହକର ବିହନ ନେଇଗଲେ ।

ଏହି କାହାଣୀରୁ ସିଦ୍ଧହେଉଛି କି, ଆମ ଉପରେ ଅନ୍ୟମାନଙ୍କର ଯେଉଁ କରଜ(ଋଣ) ଅଛି, ତାକୁ ଆମେ ଛାଡ଼ିଦେଲେ ତାହା ସୁଝିବ ନାହିଁ । ଠିକ୍ ସେହିଭଳି ଆମେ ଭଗବାନଙ୍କ ଆଜ୍ଞାନୁସାରେ ଶୁଭକର୍ମ ଗୁଡ଼ିକୁ ତ ଭଗବାନଙ୍କ ଚରଣରେ ଅର୍ପଣକରି ସେହି ବନ୍ଧନରୁ ମୁକ୍ତ ହୋଇପାରିବା, କିନ୍ତୁ ଅଶୁଭକର୍ମର ଫଳ ତ ଆମକୁ ଅବଶ୍ୟ ଭୋଗିବାକୁ ପଡ଼ିବ । ଏଥିପାଇଁ ଶୁଭ ଏବଂ ଅଶୁଭ କର୍ମରେ କୌଣସି ନିର୍ଦ୍ଦିଷ୍ଟ ବିଧାନ ବା କାନୁନ ନାହିଁ । ଯଦି ଏହିଭଳି ବଧାନ ତିଆରି ହୋଇଯାଏ କି, ଭଗବାନଙ୍କୁ ଅର୍ପଣ କରିବାଦ୍ୱାରା ଋଣ ଏବଂ ପାପ-କର୍ମର ଫଳ କାହାକୁ ଭୋଗିବାପାଇଁ ପଡ଼ିବନାହିଁ, ତେବେ ପ୍ରତ୍ୟେକ ପ୍ରାଣୀ ମୁକ୍ତ ହୋଇଯିବେ; କିନ୍ତୁ ଏହା ସମ୍ଭବନୁହେଁ । ହଁ, ଏଥିରେ ଏକ ଗୁରୁତ୍ୱପୂର୍ଣ୍ଣ କଥାଅଛି କି, ନିଜେ-ନିଜକୁ ଭଗବାନଙ୍କ ଚରଣାରବିନ୍ଦରେ ଅର୍ପଣ କରିଦେଲେ ଅର୍ଥାତ୍ ଭଗବାନଙ୍କର ଶରଣାପନ୍ନ ହୋଇଗଲେ, ସମ୍ପୂର୍ଣ୍ଣ ପାପ-ପୁଣ୍ୟ ସର୍ବଥା ନଷ୍ଟ ହୋଇଯାଏ* (ଗୀତା୧୮ ।୬୬) ।

ଏଠାରେ ଆଉ ଏକ ପ୍ରଶ୍ନ ଉଠୁଛି କି, ଧନ ଏବଂ ଭୋଗ ସାମଗ୍ରୀର ପ୍ରାପ୍ତି ଯେ ପ୍ରାରବ୍ଧ କର୍ମାନୁସାରେ ହୁଏ- ଏ କଥା ବୁଝିହେଉନାହିଁ । ଆମେ ପ୍ରତ୍ୟକ୍ଷ ଦେଖୁଛୁ କି, ଇନ୍‌କମ୍‌ଟ୍ୟାକ୍ସ, ସେଲଟ୍ୟାକ୍ସ, ଇତ୍ୟାଦି ଚୋରି କରିବାଦ୍ୱାରା ଧନ ଅଧିକ ହେଉଛି ଓ ଯଦି ଟ୍ୟାକ୍ସ ପୁରା ଦେଉଛୁ, ତେବେ ଧନ କମିଯାଉଛି, ପୁଣି ଧନ ଯିବା-ଆସିବା ପ୍ରାରବ୍ଧର ଅଧୀନ କେମିତି ହେଲା? ଏହା ତ ଚୋରିର ହିଁ ଅଧୀନ ଅଟେ ।

ଏହାର ସମାଧାନ ହେଲା ଯେ, ବାସ୍ତବରେ ଧନ ପ୍ରାପ୍ତି କରିବା ଏବଂ ଭୋଗ ଭୋଗିବା- ଏ ଦୁଇଟିରେ ହିଁ ପ୍ରାରବ୍ଧର ପ୍ରଧାନତା ରହିଛି । ପରନ୍ତୁ ଏହି ଦୁଇଟି ମଧ୍ୟରୁ କାହାର ତ ଧନ-ପ୍ରାପ୍ତିର ପ୍ରାରବ୍ଧ ଥାଏ, ଭୋଗପ୍ରାପ୍ତିର ନୁହେଁ ଏବଂ କାହାର ଭୋଗପ୍ରାପ୍ତିର ପ୍ରାପବ୍ଧ ଥାଏ, ଧନପ୍ରାପ୍ତିର ନୁହେଁ ତଥା କାହାର ଧନ ଏବଂ ଭୋଗ- ଉଭୟର ପ୍ରାରବ୍ଧ ଥାଏ । ଯାହାର ଧନପ୍ରାପ୍ତିର

---

*ଦେବର୍ଷିଭୂତାପ୍ତନୃଣାଂ ପିତୃଣାଂ ନକିଙ୍କରୋନାୟମୃଣୀଚରାଜନ୍ ।
ସର୍ବାତ୍ମନା ଯଃ ଶରଣଂଶରଣ୍ୟଂଗତୋମୁକୁନ୍ଦଂପରିହୃତ୍ୟକର୍ତ୍ତମ ।।

(ଶ୍ରୀମଦ୍ଭାଗ ।୧୧ ।୫)

ହେ ରାଜନ୍ ! ଯିଏ ସମସ୍ତ କାର୍ଯ୍ୟକୁ ଛାଡି ପୂର୍ଣ୍ଣରୂପେ ଶରଣାଗତ ବତ୍ସଳ ଭଗବାନଙ୍କ ଶରଣରେ ଆସିଯାଏ, ସିଏ ଦେବତା, ଋଷି, କୁଟୁମ୍ବିଜନ ଓ ପିତୃଗଣ- ଏହାଙ୍କ ମଧ୍ୟରୁ କାହାର ହେଲେ ଋଣୀ ଏବଂ ସେବକ ହୋଇ ରହେନାହିଁ ।

ପ୍ରାରବ୍ଧ ଅଛି, କିନ୍ତୁ ଭୋଗର ପ୍ରାରବ୍ଧ ନାହିଁ, ତା ପାଖରେ ଲକ୍ଷ-ଲକ୍ଷଟଙ୍କା ଥିଲେ ମଧ୍ୟ ଶାରୀରିକ ରୋଗଯୋଗୁଁ ଡ଼ାକ୍ତର, ବୈଦ୍ୟ ମନାକରିବା ଦ୍ୱାରା ସେ ଭୋଗ କରିପାରେ ନାହିଁ । ତାହାକୁ ଖାଦ୍ୟ-ପଦାର୍ଥ ମନୋନୁକୂଳ ମିଳେନାହିଁ, ବରଂ ରୁଖା-ସୁଖା ହିଁ ମିଳେ । ଯାହାର ଭୋଗର ପ୍ରାରବ୍ଧ ଅଛି, କିନ୍ତୁ ଧନର ପ୍ରାରବ୍ଧ ନାହିଁ, ତା ପାଖରେ ଧନର ଅଭାବ ଥିଲେ ମଧ୍ୟ ସୁଖ-ଆରାମରେ ତାହାର କୌଣସି ଊଣା ରହେନାହିଁ* । କୌଣସି ବ୍ୟକ୍ତିଙ୍କ ଦୟାରେ, ମିତ୍ରତାରେ, କାମ-ଧନ୍ଦା ମିଳିଯିବାଦ୍ୱାରା ପ୍ରାରବ୍ଧ ଅନୁସାରେ ତାକୁ ଜୀବନ-ନିର୍ବାହର ସାମଗ୍ରୀ ମିଳିଯାଏ ।

ଯଦି ଧନର ପ୍ରାରବ୍ଧ ନାହିଁ, ତେବେ ଚୋରି କଲେ ମଧ୍ୟ ଧନ ମିଳିବ ନାହିଁ । ବରଂ ଯଦି ଚୋରି କୌଣସି ପ୍ରକାରରେ ଲୋକଙ୍କ ଦୃଷ୍ଟି ଗୋଚରକୁ ଆସିଗଲା, ତେବେ ସଞ୍ଚିଥିବା ଧନ ଯିବା ସହିତ ଦଣ୍ଡ ମଧ୍ୟ ମିଳିବ । ଦଣ୍ଡ ଏଠାରେ ମିଳୁ ବା ନମିଳୁ କିନ୍ତୁ ପର ଲୋକରେ ଅବଶ୍ୟ ମିଳିବ । ସେଥିରୁ କେହି ହେଲେ ରକ୍ଷା କରି ପାରିବେ ନାହିଁ । ଯଦିଓ ଚୋରି କରିବା ଦ୍ୱାରା ପ୍ରାରବ୍ଧ ବଶତଃ ଧନ ମିଳିଯାଏ , ତେବେ ମଧ୍ୟ ସେ ଧନ ଉପଭୋଗ କରି ହୁଏନାହିଁ, ସେ ଧନ ରୋଗରେ, ଚୋରିରେ, ଡ଼କାୟତିରେ, ମୋକଦମାରେ, ଠକାମି ଇତ୍ୟାଦିରେ ଚାଲିଯାଏ । ତାତ୍ପର୍ଯ୍ୟ ଏହିକି, ସେ ଧନ ଯେତିକି ଦିନ ରହିବାର ଥିବ, ସେତିକି ଦିନ ରହି ପୁଣି ନଷ୍ଟ ହୋଇଯିବ । କେବଳ ଏତିକି ନୁହେଁ, ଇନ୍‌କମ୍‌ଟ୍ୟାକ୍ସ ଆଦି ଚୋରି କରିବା ଦ୍ୱାରା ହୃଦୟରେ ଯେଉଁ କୁସଂସ୍କାର ପଡ଼େ, ସେହି କୁସଂସ୍କାର ଜନ୍ମ-ଜନ୍ମାନ୍ତର ପର୍ଯ୍ୟନ୍ତ ତାକୁ ଚୋରି କରିବା ପାଇଁ ପ୍ରୋତ୍ସାହିତ କରିବ, ଯଦ୍ଦ୍ୱାରା ସେ ଦଣ୍ଡ ଭୋଗି ଚାଲିଥିବ ଅର୍ଥାତ୍ ଦଣ୍ଡର କଦାପି ସମାପ୍ତି ହେବନାହିଁ ।

ଯଦି ଧନର ପ୍ରାରବ୍ଧ ଅଛି, ତେବେ କେହି ପୁତ୍ରହୀନ ଧନୀ ବ୍ୟକ୍ତି

*ସର୍ବଥା ତ୍ୟାଗୀକୁ ହିଁ ଅନୁକୂଳ ବସ୍ତୁ ବହୁତ ମିଳିବାର ଦେଖାଯାଏ (ତାଙ୍କଦ୍ୱାରା ସ୍ୱୀକାର କରିବା ବା ନକରିବା ସେକଥା ଅଲଗା ଅଟେ) । ତ୍ୟାଗରେ ତ ଆହୁରି ମଧ୍ୟ ଏକ ବିଲକ୍ଷଣତା ଅଛି କି, ଯେଉଁ ମନୁଷ୍ୟ ଧନକୁ ତ୍ୟାଗ କରିଦିଏ, ଯାହାର ମନରେ ଧନର ମହତ୍ତ୍ୱ ନାହିଁ ଏବଂ ନିଜକୁ ଧନର ଅଧୀନ ମାନେ ନାହିଁ, ତା ପାଇଁ ଧନର ଏକ ନୂଆ ପ୍ରାରବ୍ଧ ତିଆରି ହୋଇଯାଏ । କାରଣ କି, ତ୍ୟାଗ ମଧ୍ୟ ଏକ ମହାନ୍ ପୁଣ୍ୟ ଅଟେ, ଯାହାଦ୍ୱାରା ତତ୍କାଳ ଏକ ନୂଆ ପ୍ରାରବ୍ଧ ସୃଷ୍ଟି ହୁଏ ।

ଧାନ ନହୀଂ ଧାଣୋ ନହୀଂ, ନହୀଂ ରପୈୟୋ ରୋକ ।
ଜୀମଣ ବୈଠେ ରାମଦାସ, ଆନ ମିଲୈ ସବ ଥୋକ ।।

କୋଳକୁ ନେଇଯିବ, ଅଥବା ଶେଷ ସମୟରେ କେହି ବ୍ୟକ୍ତି ସମ୍ପତ୍ତି-ବାଡ଼ି ତାହା ନାମରେ ଲେଖିଦେବ, ଅଥବା ନିଅଁ ଖୋଳୁ-ଖୋଳୁ ବା ଗଛ ପୋତିବା ପାଇଁ ଗାତ ଖୋଳୁ-ଖୋଳୁ, ପୋତା ହୋଇଥିବା ଧନ ମିଳିଯିବ, ଇତ୍ୟାଦି-ଇତ୍ୟାଦି । ଏହିଭଳି ପ୍ରାରବ୍ଧ ଅନୁସାରେ ଯେଉଁ ଧନ ମିଳିବାର ଅଛି, ତାହା ଯେନ-କେନ ପ୍ରକାରେ ଅବଶ୍ୟ ମିଳିବ ।*

କିନ୍ତୁ ମନୁଷ୍ୟ ପ୍ରାରବ୍ଧ ଉପରେ ତ ବିଶ୍ୱାସ କରେ ନାହିଁ, ନିହାତିପକ୍ଷେ ନିଜର ପୁରୁଷାର୍ଥ ଉପରେ ମଧ୍ୟ ବିଶ୍ୱାସ କରେନାହିଁ କି ମୁଁ ପରିଶ୍ରମ କରି ପେଟ ଗୃଖଣ୍ଡେକୁ ପୋଷି ପାରିବି ବୋଲି । ଏହି କାରଣରୁ ତାର ଚୋରି ଆଦି ଦୁଷ୍କର୍ମରେ ପ୍ରବୃତ୍ତି ହୋଇଥାଏ, ଯଦ୍ୱାରା ହୃଦୟରେ ଅଶାନ୍ତି ସୃଷ୍ଟି ହୁଏ, ଅନ୍ୟକୁ ଲୁଗୃଇବାକୁ ପଡ଼େ, ଧରା ପଡିଲେ ଦଣ୍ଡ ଭୋଗିବାକୁ ପଡ଼େ, ଇତ୍ୟାଦି-ଇତ୍ୟାଦି । ଯଦି ମନୁଷ୍ୟ ବିଶ୍ୱାସ ଏବଂ ସନ୍ତୋଷ ରଖେ, ତେବେ ହୃଦୟରେ ମହାନ୍ ଶାନ୍ତି, ଆନନ୍ଦ, ପ୍ରସନ୍ନତା ଜନ୍ମେ, ତଥା ମିଳିବାକୁ ଥିବା ଧନ ମିଳିଯିବା ସହିତ ଯେତିକି ପ୍ରାରବ୍ଧରେ ଥାଏ, ସେତିକି ଜୀବନ-ନିର୍ବାହର ସାମଗ୍ରୀ(ବସ୍ତୁ) ଯେନ-କେନ ପ୍ରକାରେ ଅବଶ୍ୟ ମିଳିଯାଏ ।

ଯେପରି ବେପାରରେ କ୍ଷତି ହେବା, ଘରେ କୌଣସି ବ୍ୟକ୍ତିର ମୃତ୍ୟୁ ହୋଇଯିବା, ବିନା କାରଣରେ ନିନ୍ଦା, ଅପମାନ, ଅପଯଶ ହେବା ଆଦି ପ୍ରତିକୂଳ ପରିସ୍ଥିତିକୁ କେହିହେଲେ ଗୃହାନ୍ତି ନାହିଁ । କିନ୍ତୁ ନଗୃହିଁଲେ ମଧ୍ୟ ତାହା ବାଧ୍ୟତା ମୂଳକ ଆସିଥାଏ । ସେହିଭଳି ଅନୁକୂଳ ପରିସ୍ଥିତି ଆସିବା ସମୟରେ ତାକୁ କେହି ମଧ୍ୟ ଅଟକାଇ ପାରିବେ ନାହିଁ । ଭାଗବତରେ ଅଛି-

**ସୁଖମୈନ୍ଦ୍ରିୟକଂ ରାଜନ୍ ସ୍ୱର୍ଗେ ନରକ ଏବ ଚ ।**
**ଦେହିନାଂ ଯଦ୍ୟଥା ଦୁଃଖଂ ତସ୍ମାନ୍ନେଚ୍ଛେତତଦ୍ ବୁଧଃ ।।**

(ଶ୍ରୀମଭାଗ·୧୧ ।୮ ।୧)

---

*ପ୍ରାପ୍ତବ୍ୟମର୍ଥଂ ଲଭତେ ମନୁଷ୍ୟୋ ଦେବୋଽପି ତଂ ଲଙ୍ଘୟିତୁଂ ନଶକ୍ତଃ ।
ତସ୍ମାନ୍ନ ଶୋଚାମି ନ ବିସ୍ମୟୋ ମେ ଯଦସ୍ମଦୀୟଂ ନ ହି ତତ୍ପରେଷାମ୍ ।।

(ପଞ୍ଚତନ୍ତ୍ର ମିତ୍ରସମ୍ପ୍ରାପ୍ତି ୧୧୨)

ଯେଉଁଧନ ମନଷ୍ୟକୁ ପ୍ରାପ୍ତ ହେବାର ଥାଏ, ତାହା ହିଁ ମିଳେ । ଦେବତା ମଧ୍ୟ ତାହାର ଉଲଙ୍ଘନ କରି ପାରନ୍ତି ନାହିଁ । ଏଣୁ ମୁଁ ନା ଶୋକ କରୁଛି, ନା ବିସ୍ମୟ ହେଉଛି । କାହିଁକି ନା, ଯେଉଁ ଧନ ମୋ ଭାଗ୍ୟରେ ଲେଖା ଅଛି, ତାହା ଅନ୍ୟକୁ କଦାପି ମିଳି ପାରିବ ନାହିଁ ।

***********************************************

ହେ ରାଜନ! ପ୍ରାଣୀମାନଙ୍କୁ ଯେମିତି ନିଜର ଅନିଚ୍ଛାସତ୍ତ୍ୱେ ମଧ୍ୟ ପ୍ରାରବ୍ଧାନୁସାରେ ଦୁଃଖ ପ୍ରାପ୍ତ ହୁଏ, ସେହିପରି ଇନ୍ଦ୍ରିୟଜନିତ ସୁଖ, ସ୍ୱର୍ଗ ଏବଂ ନରକରେ ମଧ୍ୟ ପ୍ରାପ୍ତ ହୋଇଥାଏ । ଅତଏବ ବୁଦ୍ଧିମାନ୍ ପୁରୁଷଙ୍କର କର୍ତ୍ତବ୍ୟ ଅଟେ, କି ସେମାନେ ସେହି ସୁଖକୁ ଇଚ୍ଛା କରନ୍ତୁ ନାହିଁ ।

ଯେଉଁଭଳି ଧନ ଏବଂ ଭୋଗର ପ୍ରାରବ୍ଧ ଭିନ୍ନ-ଭିନ୍ନ ଅଟେ ଅର୍ଥାତ୍ କାହାର ଧନର ପ୍ରାରବ୍ଧ ଥାଏ ତ କାହାର ଭୋଗର ପ୍ରାରବ୍ଧ ଥାଏ, ଠିକ୍ ସେହିଭଳି ଧର୍ମ ଏବଂ ମୋକ୍ଷର ପୁରୁଷାର୍ଥ ମଧ୍ୟ ଭିନ୍ନ-ଭିନ୍ନ ଅଟେ । ଅତଏବ କେହି ଧର୍ମପାଇଁ ପୁରୁଷାର୍ଥ କରିଥାଏ ତ କେହି ମୋକ୍ଷପାଇଁ ପୁରୁଷାର୍ଥ କରିଥାଏ । ଧର୍ମ ଅନୁଷ୍ଠାନରେ ଶରୀର, ଧନ ଆଦି ବସ୍ତୁ ମାନଙ୍କର ପ୍ରାଧାନ୍ୟତା ରହେ ଏବଂ ମୋକ୍ଷ ପ୍ରାପ୍ତିରେ ଭାବ ଓ ବିଗୃରର ପ୍ରାଧାନ୍ୟତା ରହେ ।

'କରିବା'ଏକ ପ୍ରକାରର ଏବଂ 'ହେବା'ଏକ ପ୍ରକାରର ଅଟେ । ଏ ଦୁଇଟି ବିଭାଗ ଅଲଗା-ଅଲଗା, କରିବାର ଜିନିଷ ହେଉଛି-କର୍ତ୍ତବ୍ୟ ଏବଂ ହେବାର ଜିନିଷ ହେଉଛି-ଫଳ । ମନୁଷ୍ୟର କର୍ମ କରିବାରେ ଅଧିକାର ଅଛି, ଫଳରେ ନୁହେଁ-**'କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ'** (ଗୀତା୨ ।୪୭) । ତାତ୍ପର୍ଯ୍ୟ ହେଇଛି, କି ହେବାର ପୂର୍ତ୍ତି (ପୂର୍ଣତା) ପ୍ରାରବ୍ଧ ଅନୁସାରେ ଅବଶ୍ୟ ହୋଇଥାଏ । ସେଥିପାଇଁ ଏହା ହେବା ଦରକାର ଓ ଏହା ନ ହେବା ଦରକାର-ଏଭଳି ଇଛା ମଧ୍ୟ କରିବା ଅନୁଚିତ୍, ଏବଂ ଶାସ୍ତ୍ର ତଥା ଲୋକ-ମର୍ଯ୍ୟାଦାର ଅନୁସାରେ କର୍ତ୍ତବ୍ୟ କରିବା ଆବଶ୍ୟକ । 'କରିବା' ପୁରୁଷାର୍ଥର ଅଧୀନ ଏବଂ 'ହେବା' ପ୍ରାରବ୍ଧର ଅଧୀନ । ଏଣୁ ମନୁଷ୍ୟ ସର୍ବଥା କରିବାରେ ସ୍ୱାଧୀନ ତଥା ହେବାରେ ପରାଧୀନ ଅଟେ । ମନୁଷ୍ୟର ଉନ୍ନତିରେ ଗୋଟିଏ ମୁଖ୍ୟ କଥା ହେଲା-**'କରିବାରେ ସାବଧାନ ରହିବା ଏବଂ ହେବାରେ ପ୍ରସନ୍ନତା ରହିବା'** ।

କ୍ରିୟମାଣ, ସଞ୍ଚିତ, ଏବଂ ପ୍ରାରବ୍ଧ-ଏହି ୩ଟି କର୍ମରୁ ମୁକ୍ତ ହେବାପାଇଁ କୌଣସି ଉପାୟ ଅଛି କି ?

ପ୍ରକୃତି ଏବଂ ପୁରୁଷ-ଏହି ଦୁଇଟି ଭିନ୍ନ-ଭିନ୍ନ ଅଟେ । ପ୍ରକୃତି ସର୍ବଦା କ୍ରିୟାଶୀଳ, କିନ୍ତୁ ପୁରୁଷ ଠାରେ କେବେ ପରିବର୍ତ୍ତନ ରୂପକ କ୍ରିୟା ହୁଏନାହିଁ । ପ୍ରକୃତି ସହିତ ନିଜର ସମ୍ବନ୍ଧ ମାନୁଥିବା **'ପ୍ରକୃତିସ୍ଥ'** ପୁରୁଷ ହିଁ କର୍ତ୍ତା-ଭୋକ୍ତା

ହୋଇଥାଏ । ଯେତେବେଳେ ସେହି ପୁରୁଷ ପ୍ରକୃତିଠାରୁ ସମ୍ବନ୍ଧ ବିଛେଦ କରିଦିଏ ଅର୍ଥାତ୍ ନିଜର ସ୍ୱରୂପରେ ସ୍ଥିତ ହୋଇଯାଏ, ସେତେବେଳେ ତାହା ଉପରେ କୌଣସି କର୍ମ ଲାଗୁ ହୁଏନାହିଁ ।

**ପ୍ରାରବ୍ଧ-ସମ୍ବନ୍ଧୀୟ ଅନ୍ୟକଥା ଗୁଡ଼ିକ ନିମ୍ନୋକ୍ତ ପ୍ରକାରର ଅଟେ ।**

(୧) ବୋଧ(ଜ୍ଞାନ) ହେବାପରେ ମଧ୍ୟ ଜ୍ଞାନୀର ପ୍ରାରବ୍ଧ ରହିଥାଏ, ଏହିଭଳି କଥା କେବଳ ଅଜ୍ଞାନୀ ମାନଙ୍କୁ ବୁଝାଇବା ପାଇଁ କୁହାଯାଇଛି । କାରଣ କି, ଅନୁକୂଳ ବା ପ୍ରତିକୂଳ ଘଟଣା ଘଟିଯିବାକୁ ହିଁ ପ୍ରାରବ୍ଧ କୁହାଯାଏ । ପ୍ରାଣୀକୁ ସୁଖୀ ବା ଦୁଃଖୀକରିବା ପ୍ରାରବ୍ଧର କାମ ନୁହେଁ, ବରଂ ତାହା ଅଜ୍ଞାନର କାମ ଅଟେ । ଅଜ୍ଞାନ ଦୂରେଇ ଯିବା ପରେ ମନୁଷ୍ୟ ସୁଖୀ-ଦୁଃଖୀ ହୁଏନାହିଁ । ତାକୁ କେବଳ ଅନୁକୂଳତା ଏବଂ ପ୍ରତିକୂଳତାର ଜ୍ଞାନ ହୁଏ । ଜ୍ଞାନହେବା ଦୋଷୀ ନୁହେଁ, ବରଂ ସେଥିରେ ସୁଖ-ଦୁଃଖ ରୂପକ ବିକାର ହେବା ଦୋଷ ଅଟେ । ଏଣୁ ବାସ୍ତବରେ ଜ୍ଞାନୀର ପ୍ରାରବ୍ଧ ନଥାଏ ।

(୨) ଯେଉଁଭଳି ପ୍ରାରବ୍ଧ ଥାଏ, ସେହିଭଳି ବୁଦ୍ଧି ମଧ୍ୟ ହୋଇଥାଏ । ଯଥାଃ- ହାଟରେ ଜଣେ ବେପାରୀ ମାଲ୍ ବିକିଦିଏ ଏବଂ ଅନ୍ୟ ଏକ ବେପାରୀ ମାଲ୍ କିଣିନିଏ । ପରେ ଯେତେବେଳେ ହାଟର-ଭାବ ବଢ଼ିଯାଏ ସେତେବେଳେ ବିକ୍ରି କରିଥବା ବେପାରୀର ଲୋକସାନ୍ ହୋଇଥାଏ ଏବଂ କିଣିବା ବେପାରୀର ଲାଭ ହୋଇଥାଏ, ଏବଂ ଯେତେବେଳେ ହାଟର ଭାଉ କମ୍ ହୋଇଯାଏ, ସେତେବେଳେ ବିକ୍ରି କରିଥିବା ବେପାରୀର ଲାଭ ତଥା କିଣିଥିବା ବେପାରୀର କ୍ଷତି ହୁଏ । ସୁତରାଁ କ୍ରୟ କରିବା ଏବଂ ବିକ୍ରି କରିବାର ବୁଦ୍ଧି ପ୍ରାରବ୍ଧ ଦ୍ୱାରା ତିଆରି ହୋଇଥାଏ, ଅର୍ଥାତ୍ ଲାଭ ଏବଂ କ୍ଷତି ହେବାପାଇଁ ପୂର୍ବରୁ ଯେପରି ପ୍ରାରବ୍ଧ ଅଛି, ସେହି ଅନୁଯାୟୀ ପ୍ରଥମରୁ ବୁଦ୍ଧି ପ୍ରସ୍ତୁତ ହୋଇଯାଏ । ଯଦ୍ୱାରା ପ୍ରାରବ୍ଧ ଅନୁସାରେ ଫଳଭୋଗ ହୋଇପାରିବ । କିନ୍ତୁ କିଣିବା ଏବଂ ବିକିବା ରୂପକ କ୍ରିୟାକୁ ନ୍ୟାୟ ପୂର୍ବକ କିମ୍ବା ଅନ୍ୟାୟ ପୂର୍ବକ କରିବାରେ ମନୁଷ୍ୟ ସର୍ବଥା ସ୍ୱତନ୍ତ୍ର, କାହିଁକି ନାଁ ଏହା କ୍ରିୟମାଣ (ନୂଆକର୍ମ) ଅଟେ, ପ୍ରାରବ୍ଧ ନୁହେଁ ।

(୩) ଜଣେ ଲୋକ ହାତରୁ ଗ୍ଲାସ ପଡ଼ି ଭାଙ୍ଗିଗଲା, ତେବେ ଏହା ସେହି ଲୋକର ଅସାବଧାନତା ଯୋଗୁଁ ହେଲା ନାଁ ପ୍ରାରବ୍ଧ ଯୋଗୁଁ ?

କର୍ମ କରିବା ସମୟରେ ତ ସାବଧାନତା ରଖିବା ଆବଶ୍ୟକ, କିନ୍ତୁ ଯାହାସବୁ (ଭଲ ବା ଖରାପ) ହୋଇଗଲା, ତାହାକୁ ପୂର୍ଣ୍ଣରୂପେ ପ୍ରାରବ୍ଧ (ହେବାର ଥିଲା ହୋଇଗଲା ବୋଲି)ହିଁ ମାନିବା ଆବଶ୍ୟକ । ସେହି ସମୟରେ ଯିଏ ଏ କଥା କହେ କି ଯଦି ତୁ ସାବଧାନ ହୋଇଥାନ୍ତୁ, ତେବେ ଗିଲାସ ଭାଙ୍ଗି ନ ଥାନ୍ତା-ଏଥିରୁ ଏହା ବୁଝିବା ଦରକାର କି ମୁଁ ବର୍ତ୍ତମାନ ଠାରୁ ଆଗକୁ ସାବଧାନତା ରକ୍ଷା କରିବି ଯାହାଫଳରେ ଦ୍ୱିତୀୟ ଥର ପାଇଁ ଗ୍ଲାସ ହାତରୁ ପଡ଼ିବନାହିଁ । ବାସ୍ତବରେ ଯାହା ହୋଇଗଲା, ତାକୁ ଅସାବଧାନତା ନ ମାନି, ହେବାର ଥିଲା ହୋଇଗଲା ବୋଲି ମାନିବା ଦରକାର । ଏଣୁ କରିବାରେ ସାବଧାନ ଏବଂ ହେବାରେ ପ୍ରସନ୍ନ ରହିବା ଉଚିତ୍ ।

(୪) ପ୍ରାରବ୍ଧରୁ ହେଉଥିବା ରୋଗ ଏବଂ କୁପଥ୍ୟରୁ ହେଉଥିବା ରୋଗ ମଧ୍ୟରେ ପ୍ରଭେଦ କଣ ? କୁପଥ୍ୟଜନିତ ରୋଗ ଔଷଧରେ ଭଲ ହୋଇଯାଇ ପାରେ; ପରନ୍ତୁ ପ୍ରାରବ୍ଧ ଜନିତ ରୋଗ ଔଷଧଦ୍ୱାରା ଭଲହୁଏନାହିଁ । ମହାମୃତ୍ୟୁଞ୍ଜୟ ଆଦି ମନ୍ତ୍ରର ଜପ କରିବାଦ୍ୱାରା; ଯଦି ଅନୁଷ୍ଠାନ ପ୍ରବଳହୁଏ, ତେବେ ପ୍ରାରବ୍ଧ ଜନିତ ରୋଗ ଦୁର ହୋଇପାରେ ।

ରୋଗ ଦୁଇପ୍ରକାରର, ଆଧି(ମାନସିକ) ଏବଂ ବ୍ୟାଧି (ଶାରୀରିକ) । ଏଥି ମଧ୍ୟରୁ ଆଧି ଦୁଇଭାଗରେ ବିଭକ୍ତ- ପ୍ରଥମତଃ ଶୋକ, ଚିନ୍ତା ଆଦି, ଦିତୀୟତଃ ପାଗଳାମି । ଚିନ୍ତା, ଶୋକ ଆଦି ତ ଅଜ୍ଞାନରୁ ଜନ୍ମେ, କିନ୍ତୁ ପାଗଳାମି ପ୍ରାରବ୍ଧରୁ ହୁଏ । ଅତଏବ ଜ୍ଞାନଉଦୟ ହେଲେ ଚିନ୍ତା, ଶୋକ ଇତ୍ୟାଦି ତ ଦୂର ହୋଇଯାଏ, କିନ୍ତୁ ପ୍ରାରବ୍ଧ ଅନୁସାରେ ପାଗଳାମି ରହିପାରେ । ହଁ, ପାଗଳ ହୋଇଗଲେ ମଧ୍ୟ ଜ୍ଞାନୀ ଦ୍ୱାରା କୌଣସି ଅନୁଚିତ ଓ ଶାସ୍ତ୍ର-ନିଷିଦ୍ଧ କ୍ରିୟା ହୁଏନାହିଁ ।

(୫)- ଆକସ୍ମିକମୃତ୍ୟୁ ଏବଂ ଅକାଳ ମୃତ୍ୟୁ ଭିତରେ କୌଣସି ପ୍ରଭେଦ ଅଛି କି? କୌଣସି ବ୍ୟକ୍ତିକୁ ସାପ କାମୁଡ଼ିବା ଦ୍ୱାରା ସେ ମରୁ ବା ଅଚାନକ ଉପରୁ ପଡ଼ିଯାଇ ମରୁ, ପାଣିରେ ବୁଡ଼ିଯାଇ ମରୁ ବା ହାର୍ଟଫେଲ ହୋଇ କିମ୍ବା କୌଣସି ଦୁର୍ଘଟଣା ଆଦିରେ ମରୁ- ଏହା ହେଉଛି ତାର ଆକସ୍ମିକ ମୃତ୍ୟୁ । ସ୍ୱାଭାବିକ ମୃତ୍ୟୁଭଳି ଆକସ୍ମିକ ମୃତ୍ୟୁ ମଧ୍ୟ ପ୍ରାରବ୍ଧ ଅନୁସାରେ (ଆୟୁ ପୂର୍ଣ୍ଣ ହେବାପରେ ) ହୋଇଥାଏ ।

ଯଦି କୌଣସି ବ୍ୟକ୍ତି ଜାଣି-ଜାଣି ଆତ୍ମହତ୍ୟା କରେ ବା ଦଉଡ଼ି ଦେଇ,

କୁଅକୁ ଡ଼େଇଁ, ଗାଡ଼ିଆଗକୁ ଡେଇଁ, ଛାତରୁଡେଇଁ, ବିଷଖାଇ ଅଥବା ଶରୀରରେ ନିଆଁ ଲଗାଇ ମରିଯାଏ, ତେବେ ତାହା ତାର ଅକାଳ ମୃତ୍ୟୁ । ଏହି ମୃତ୍ୟୁ ଆୟୁଷଥାଇ ହିଁ ହୋଇଥାଏ । ଆତ୍ମହତ୍ୟା କରିଥିବା ଲୋକକୁ ମନୁଷ୍ୟ ହତ୍ୟାର ପାପଲାଗେ, ସୁତରାଂ ଏହା ନୂତନ ପାପ କର୍ମ ଅଟେ, ପ୍ରାରବ୍ଧ ନୁହେଁ । ମନୁଷ୍ୟ ଶରୀର କେବଳ ଭଗବାନଙ୍କୁ ପ୍ରାପ୍ତି କରିବା ପାଇଁ ହିଁ ମିଳିଛି, ଅତଃ ଏହାକୁ ଆତ୍ମହତ୍ୟାକରି ନଷ୍ଟ କରିଦେବା ଘୋର ପାପ ଅଟେ ।

ବହୁତଥର ଆତ୍ମହତ୍ୟା କରିବାକୁ ଚେଷ୍ଟା କରି ମଧ୍ୟ ମନୁଷ୍ୟ ବଞ୍ଚିଯାଏ, ମରେନାହିଁ । ଏହାର କାରଣ ହେଲା, ଅନ୍ୟ ମନୁଷ୍ୟଙ୍କ ପ୍ରାରବ୍ଧ ସହିତ ତାହାର ସମ୍ବନ୍ଧ ଯୋଡ଼ିହୋଇ ରହିଥାଏ, ଫଳରେ ଅନ୍ୟର ପ୍ରାରବ୍ଧ କାରଣରୁ ସେ ବଞ୍ଚିଯାଏ । ଉଦାହରଣ ସ୍ୱରୂପ:-ଭବିଷ୍ୟତରେ କୌଣସି ବ୍ୟକ୍ତିର ପୁତ୍ର ହେବାର ଅଛି, କିନ୍ତୁ ବର୍ତ୍ତମାନ ସେ ଆତ୍ମହତ୍ୟା କରିବାପାଇଁ ଚେଷ୍ଟାକଲେ ମଧ୍ୟ (ଆଗକୁ ଆସୁଥିବା) ପୁତ୍ରର ପ୍ରାରବ୍ଧ ତାକୁ ଆତ୍ମହତ୍ୟା କରିବାକୁ ଦିଏନାହିଁ । ଯଦିଓ ସେହି ବ୍ୟକ୍ତିଦ୍ୱାରା ଭବିଷ୍ୟତରେ କୌଣସି ଭଲକାମ ହେବାର ଅଛି, ବା ଲୋକଙ୍କ ଉପକାର ହେବାର ଅଛି ଅଥବା ଏହି ଜନ୍ମରେ, ଏହି ଶରୀରରେ ପ୍ରାରବ୍ଧ କାରଣରୁ କୌଣସି ଉତ୍କଟ ଭୋଗ(ସୁଖ-ଦୁଃଖ) ମିଳିବାର ଅଛି, ତେବେ ଆତ୍ମହତ୍ୟାପାଇଁ ଚେଷ୍ଟାକଲେ ମଧ୍ୟ ସେ ମରେନାହିଁ ।

ଯଦି ଜଣେ ଲୋକ ଅନ୍ୟଜଣକୁ ମାରିଦେବାଦ୍ୱାରା ସେ ପୂର୍ବଜନ୍ମରେ ତାହାପ୍ରତି କରିଥିବା ଅନ୍ୟାୟର ପ୍ରତିଶୋଧ ନେଲା ଏବଂ ଯିଏ ମଲା ସେ ପୂର୍ବଜନ୍ମରେ କରିଥିବା ଅନ୍ୟାୟର ଫଳ(ଦଣ୍ଡ) ପାଇଲା, ତେବେ ପୁଣି ମାରିଲାବାଲାର ଦୋଷ କଣ?

ଏଥିରେ ମାରୁଥିବା ବ୍ୟକ୍ତିର ସଂପୂର୍ଣ୍ଣ ଦୋଷ, କାହିଁକି ନା ଦଣ୍ଡଦେବା ଶାସକର କାମ, ସର୍ବସାଧାରଣଙ୍କର ନୁହେଁ । ମନେକର ଜଣକୁ ଦିନ ୧୦ଟା ସମୟରେ ଫାଶୀ ମିଳିବାର ଅଛି, ଯଦି ଅନ୍ୟଜଣେ (ଫାଶୀଦଣ୍ଡରେ ଦଣ୍ଡିତ ସେହି ବ୍ୟକ୍ତିକୁ) ଘାତକଙ୍କ ହାତରୁ ଛଡ଼ାଇ ନେଇ ଠିକ୍ ସେହି ୧୦ଟା ସମୟରେ ନିଜେହାଣି ମାରିପକାଏ! ତେବେ ଏହିଭଳି ପରିସ୍ଥିତିରେ ହାଣିଥିବା ଲୋକକୁ ହିଁ ଫାଶୀହେବ; କାହିଁକି ନା ଏହି ଆଜ୍ଞା ରାଜା ଘାତକକୁ ଦେଇଥିଲେ, କିନ୍ତୁ ତାକୁ କିଏ ଆଜ୍ଞା ଦେଇଥିଲା ।

********************************************

ମାରିବା ଲୋକର ଏହି ଜ୍ଞାନ ନଥାଏ କି, ମୁଁ ପୂର୍ବଜନ୍ମର ପ୍ରତିଶୋଧ ନେଉଛି । ଏହିଜ୍ଞାନ ନଥାଇ ଯେହେତୁ ସେ ମାରେ, ତେଣୁ ଏଥିରେ ତାର ପୂର୍ଣ୍ଣ ଦୋଷ । ଅନ୍ୟକୁ ମାରିବାର ଅଧିକାର କାହାର ହେଲେ ନାହିଁ ଓ ମରିବାକୁ ମଧ୍ୟ କେହିହେଲେ ଚାହାଁନ୍ତି ନାହିଁ, ଅନ୍ୟକୁ ମାରିବାଟା ନିଜ ବିବେକର ଅନାଦର କରିବା । ପ୍ରତ୍ୟେକ ମନୁଷ୍ୟଙ୍କୁ ଯେଉଁ ବିବେକଶକ୍ତି ଦିଆଯାଇଛି, ସେହି ବିବେକଦ୍ୱାରା ଭଲ-ମନ୍ଦକାର୍ଯ୍ୟ କରିବାରେ ମନୁଷ୍ୟ ସର୍ବଥା ସ୍ୱତନ୍ତ୍ର ଅଟେ । ଅତଏବ ବିବେକର ଅନାଦର କରି ଅନ୍ୟକୁ ମାରିବା କିମ୍ବା ମାରିବାର ଇଚ୍ଛାରଖିବା ମହାନ୍ ଦୋଷ ଅଟେ ।

ଯଦି ପୂର୍ବଜନ୍ମର ପ୍ରତିଶୋଧ ଜଣେ-ଅନ୍ୟଜଣକୁ ଏହିଭଳି ଶୁଝାଇବାରେ ଲାଗିବେ, ତେବେ ଏହି ଉଶୃଙ୍ଖଳତା କେବେହେଲେ ଶେଷ ହେବନାହିଁ କି ମନୁଷ୍ୟ କଦାପି ମୁକ୍ତ ହୋଇପାରିବ ନାହିଁ ।

ପୂର୍ବ ଜନ୍ମର ପ୍ରତିଶୋଧ ଅନ୍ୟ (ସାପ, ବିଛା ଆଦି) ଯୋନିରେ ନିଆଯାଇ ପାରିବ । ମନୁଷ୍ୟ ଯୋନି ପ୍ରତିଶୋଧ ନେବାପାଇଁ ମିଳିନାହିଁ । ହଁ, ଏପରି ହୋଇପାରେ କି ପୂର୍ବ ଜନ୍ମରେ ଆମପ୍ରତି କୁକର୍ମ କରିଥିବା ବ୍ୟକ୍ତି ଆମକୁ ସ୍ୱାଭାବିକ ଭଲଲାଗିବ ନାହିଁ ବରଂ ଖରାପ ଲାଗିବ, କିନ୍ତୁ ଖରାପ୍ ଲାଗୁଥିବା ବ୍ୟକ୍ତିପ୍ରତି ଦ୍ୱେଷ କରିବା ବା ତାକୁ କଷ୍ଟଦେବା ମହାନ୍ ଦୋଷ ଅଟେ, କାହିଁକି ନା ଏହା ନୂଆକର୍ମ; ପ୍ରାରବ୍ଧ ନୁହେଁ ।

ପୂର୍ବରୁ ଯେମିତିକା ପ୍ରାରବ୍ଧ ଥାଏ, ସେହି ଅନୁସାରେ ତାର ବୁଦ୍ଧି ତିଆରି ହୋଇଥାଏ, ପୁଣି ଏହା ଦୋଷ କେମିତି ହେଲା ?

ବୁଦ୍ଧିରେ ଯେଉଁ ଦ୍ୱେଷ ଅଛି, ତାହାର ବଶୀଭୂତ ହେବାହିଁ ଦୋଷ ଅଟେ । ତାକୁ ବୁଝିବା ଆବଶ୍ୟକ, କି ମୁଁ ଦ୍ୱେଷର ବଶବର୍ତ୍ତୀ ନ ହୋଇ ବିବେକର ଆଦର କରିବି, ଗୀତା ମଧ୍ୟ କହୁଛି କି ବୁଦ୍ଧିରେ ଯେଉଁ ରାଗ-ଦ୍ୱେଷ ରହିଛି (ଗୀତା୩ ।୪୦) ତାର ବଶୀଭୂତ ହୁଅନାହିଁ-**'ତୟୋର୍ନ ବଶମାଗଚ୍ଛେତ୍'** (ଗୀତା୩ ।୩୪) ।

(୭) ପ୍ରାରବ୍ଧ ଏବଂ ଭଗବତ୍ କୃପାରେ ପାର୍ଥକ୍ୟ କଣ ?

ଏ ଜୀବକୁ ଯାହାକିଛି ମିଳେ, ତାହା ପ୍ରାରବ୍ଧ ଅନୁସାରେ ହିଁ ମିଳେ, କିନ୍ତୁ ପ୍ରାରବ୍ଧ-ବିଧାନର ବିଧାତା ସ୍ୱୟଂ ଭଗବାନ ଅଟନ୍ତି । କାରଣ କର୍ମ ଜଡ଼ ହୋଇଥିବାରୁ ସେ ସ୍ୱତନ୍ତ୍ର ଫଳ ଦେଇପାରେନା, ଭଗବାନଙ୍କର ବିଧାନ ଅନୁଯାୟୀ ସେ ଫଳ ଦିଏ । ମନେକର ଯଦି ଜଣେ ଲୋକ ଅନ୍ୟର ଜମିରେ ଦିନମାନ କାମ କରେ, ତେବେ କାମ ଅନୁସାରେ ସନ୍ଧ୍ୟା ସମୟକୁ ତାକୁ ପଇସା

ମଧ୍ୟ ମିଳିଯାଏ । କିନ୍ତୁ ସେହି ପଇସା ଜମିର ମାଲିକଙ୍କ ଠାରୁ ମିଳେ ।

ପଇସାତ କାମ କରିବା ଦ୍ୱାରା ହିଁ ମିଳେ, ବିନା କାମରେ କଣ ପଇସା ମିଳିବ ?

ପଇସା ତ କାମ କରିବାଦ୍ୱାରା ହିଁ ମିଳେ, କିନ୍ତୁ ମାଲିକବିନା ପଇସା ଦେବ କିଏ? ଯଦି କେହି ଦିନଯାକ ଜଙ୍ଗଲରେ ଯାଇ କାମକରେ ତେବେ ତାକୁ କେହି ପଇସା ଦେବକି ? କେହି ଦେବେନାହିଁ । ସେଥିରେ ଏହା ଦେଖାଯିବ କି କାହାର ନିର୍ଦ୍ଦେଶରେ ଏବଂ କାହାର ଦାୟିତ୍ୱରେ ତୁମେ କାମ କରିଛ ।

ଯଦିଓ କୌଣସି ଗୃହକର କାମକୁ ବହୁତ ତତ୍ପରତା ପୂର୍ବକ ଚତୁରତା ସହିତ ଏବଂ ଉତ୍ସାହ ସହିତ କରେ, କିନ୍ତୁ ସେ କରେ କେବଳ ମାଲିକର ପ୍ରସନ୍ନତା ପାଇଁ, ତେବେ ମାଲିକ ତାକୁ ମଜୁରିରୁ ଅଧିକ କିଛିଟଙ୍କା ଦେବା ସହିତ ତତ୍ପରତା ଓ ଉତ୍ସାହ ଆଦି ଗୁଣ ଦେଖି ନିଜ ଜମିର ଦାୟିତ୍ୱ ମଧ୍ୟ ବୁଝିବାକୁ ଛାଡ଼ିଦିଏ । ସେହିଭଳି ଭଗବାନ ମଧ୍ୟ ମନୁଷ୍ୟକୁ ତାର କର୍ମ ଅନୁଯାୟୀ ଫଳ ଦିଅନ୍ତି । ଯଦି କୌଣସି ମନୁଷ୍ୟ ଭଗବାନଙ୍କ ଆଜ୍ଞା ଅନୁସାରେ, କେବଳ ତାଙ୍କର ପ୍ରସନ୍ନତା ପାଇଁ ପ୍ରତ୍ୟେକ କାର୍ଯ୍ୟକରେ, ତେବେ ତାକୁ ଭଗବାନ ଅନ୍ୟ ମାନଙ୍କ ଅପେକ୍ଷା ଅଧିକ ହିଁ ଦେଇଥାନ୍ତି, କିନ୍ତୁ ଯିଏ ଭଗବାନଙ୍କ ଚରଣାର ବିନ୍ଦରେ ସଦା ସମର୍ପିତ ହୋଇ ସବୁକାର୍ଯ୍ୟ କରେ, ସ୍ୱୟଂ ଭଗବାନ ସେହି ଭକ୍ତର ମଧ୍ୟ ଭକ୍ତ ହୋଇଯାଆନ୍ତି* । ସଂସାରରେ କେହିହେଲେ ଗୃହକରକୁ ନିଜର ମାଲିକ କରନ୍ତି ନାହିଁ, କିନ୍ତୁ ଭଗବାନ ଶରଣାଗତ ଭକ୍ତକୁ ନିଜର ମାଲିକ କରିଦିଅନ୍ତି । ଏହିଭଳି ଉଦାରତା କେବଳ ପ୍ରଭୁଙ୍କଠାରେ ହିଁ ରହିଛି । ଏହିଭଳି ପରମ କୃପାଳୁ ପ୍ରଭୁଙ୍କ ଚରଣରେ ଶରଣ ନ ହୋଇ ଯେଉଁ ମନୁଷ୍ୟ ପ୍ରାକୃତ-ଉତ୍ପତ୍ତି-ବିନାଶଶୀଳ ପଦାର୍ଥର ପରାଧୀନରେ ରହିଅଛନ୍ତି, ତାଙ୍କର ବୁଦ୍ଧି ସର୍ବଥା ନଷ୍ଟ-ଭ୍ରଷ୍ଟ ହୋଇ ଯାଇଛି । ସେମାନେ ଏକଥାକୁ କଦାପି ବୁଝି ପାରନ୍ତି ନାହିଁ କି ଆମ ସମ୍ମୁଖରେ ପ୍ରତ୍ୟକ୍ଷ ଉତ୍ପନ୍ନ ଏବଂ ନଷ୍ଟ ହେଉଥିବା ପଦାର୍ଥ ଆମକୁ କେତେଦିନ ପର୍ଯ୍ୟନ୍ତ ସାହାଯ୍ୟ କରି ପାରିବ(ଗୀତା୧୮ ।୧୨ର ବ୍ୟାଖ୍ୟାରୁ ଉଦ୍ଧୃତ) ।

*ନାରାୟଣ! ନାରାୟଣ! ନାରାୟଣ!*



*ଏବଂ ସ୍ୱଭକ୍ତୟୋ ରାଜନ୍ ଭଗବାନ ଭକ୍ତ ଭକ୍ତିମାନ୍ । (ଶ୍ରୀମଭା·୧୦ ।୮୬ ।୫୯)

# ବର୍ଣ୍ଣବ୍ୟବସ୍ଥାର ତାତ୍ପର୍ଯ୍ୟ
## (୧)

କର୍ମ ଦୁଇ ପ୍ରକାରର ଅଟେ- (୧) ଜନ୍ମାରମ୍ଭକ କର୍ମ ଏବଂ (୨)ଭୋଗଦାୟକ କର୍ମ । ଯେଉଁ କର୍ମଦ୍ୱାରା ମନୁଷ୍ୟ ଉଚ୍ଚ-ନୀଚ ଯୋନିରେ ଜନ୍ମହୁଏ, ତାକୁ ଜନ୍ମାରମ୍ଭକ କର୍ମ କୁହାଯାଏ । ଏବଂ ଯେଉଁ କର୍ମଦ୍ୱାରା ସୁଖ-ଦୁଃଖର ଭୋଗ ହୁଏ, ତାକୁ ଭୋଗଦାୟକ କର୍ମ କୁହାଯାଏ । ଭୋଗଦାୟକ କର୍ମ ଅନୁକୂଳ-ପ୍ରତିକୂଳ ପରିସ୍ଥିତିକୁ ସୃଷ୍ଟିକରେ, ଯାହାକୁ ଗୀତାରେ ଅନିଷ୍ଟ, ଇଷ୍ଟ ଏବଂ ମିଶ୍ର ନାମରେ ନାମିତ କରାଯାଇଛି (ଗୀତା୧୮ ।୧୨) ।

ଗଭୀର ଦୃଷ୍ଟିରେ ଦେଖିବାକୁ ଗଲେ ପ୍ରତ୍ୟେକ କର୍ମ ଭୋଗଦାୟକ ଅଟେ, ଅର୍ଥାତ୍ ଜନ୍ମାରମ୍ଭକ କର୍ମଦ୍ୱାରା ଭୋଗ ହୋଇଥାଏ ଏବଂ ଭୋଗଦାୟକ କର୍ମଦ୍ୱାରା ମଧ୍ୟ ଭୋଗ ହୋଇଥାଏ । ଯଥାः- ଯିଏ ଉତ୍ତମ କୁଳରେ ଜନ୍ମ ହୋଇଛି, ତାହାର ଆଦର-ସତ୍କାର ହୁଏ । ଏବଂ ଯିଏ ନୀଚ କୁଳରେ ଜନ୍ମ ହୋଇଛି, ତାକୁ ନିରାଦର ଏବଂ ତିରସ୍କାର ମିଳେ । ଏହିଭଳି ଅନୁକୂଳ ପରିସ୍ଥିତି ପ୍ରାପ୍ତ ହୋଇଥିବା ବ୍ୟକ୍ତିର ଆଦର ତଥା ପ୍ରତିକୂଳ ପରିସ୍ଥିତି ପ୍ରାପ୍ତ ହୋଇଥିବା ବ୍ୟକ୍ତିର ନିରାଦର ହୋଇଥାଏ । ତାତ୍ପର୍ଯ୍ୟ ଏହିକି, ଆଦର ଏବଂ ନିରାଦର ରୂପରେ ଭୋଗ ତ ଜନ୍ମାରମ୍ଭକ ଏବଂ ଭୋଗଦାୟକ- ଉଭୟ କର୍ମର ହୋଇଥାଏ । ପରନ୍ତୁ ଜନ୍ମାରମ୍ଭକ କର୍ମ ଦ୍ୱାରା ଯେଉଁଜନ୍ମ ହୁଏ, ସେଥିରେ ଆଦର-ନିରାଦର ରୂପକ ଭୋଗ ଗୌଣ ଅଟେ । କାହିଁକି ନା, ଆଦର-ନିରାଦର କେବେ କେବେ ହୋଇଥାଏ, ସବୁବେଳେ ନୁହେଁ । ଏବଂ ଭୋଗଦାୟକ କର୍ମରୁ ଯେଉଁ ଅନୁକୂଳ ପ୍ରତିକୂଳ ପରିସ୍ଥିତି ଆସେ, ସେଥିରେ ପରିସ୍ଥିତିର ଭୋଗ ମୁଖ୍ୟ ଅଟେ, କାହିଁକିନା ପରିସ୍ଥିତି ସବୁବେଳେ ଆସିଥାଏ ।

ଭୋଗଦାୟକ କର୍ମର ସଦୁପଯୋଗ କିମ୍ବା ଦୁରୁପଯୋଗ କରିବାରେ ପ୍ରତ୍ୟେକ ମନୁଷ୍ୟ ସ୍ୱତନ୍ତ୍ର ଅଟେ ଅର୍ଥାତ୍ ସେ ଅନୁକୂଳ-ପ୍ରତିକୂଳ ପରିସ୍ଥିତିରେ ସୁଖୀ-ଦୁଃଖୀ ମଧ୍ୟ ହୋଇପାରିବ ଏବଂ ସେହି ପରିସ୍ଥିତିକୁ ସାଧନ ସାମଗ୍ରୀ ରୂପେ ତିଆରି ମଧ୍ୟ କରିପାରିବ । ଯିଏ ଅନୁକୂଳ-ପ୍ରତିକୂଳ ପରିସ୍ଥିତିରେ ସୁଖୀ-ଦୁଃଖୀ ହୁଏ, ସେ ଅଜ୍ଞ ଏବଂ ଯିଏ ତାହାକୁ ସାଧନ-ସାମଗ୍ରୀରେ

ପରିଣତ କରେ ସେ ବୁଦ୍ଧିମାନ ସାଧକ ଅଟେ । କାହିଁକି ନା, ମନୁଷ୍ୟ ଜନ୍ମ ପରମାତ୍ମାଙ୍କପ୍ରାପ୍ତି ପାଇଁ ହିଁ ମିଳିଛି, ଅତଏବ ଏଥିରେ ଯାହା ବି ଅନୁକୂଳ ବା ପ୍ରତିକୂଳ ପରିସ୍ଥିତି ଆସୁଛି, ସେ ସବୁ ସାଧନ-ସାମଗ୍ରୀ ହିଁ ଅଟେ ।

ଅନୁକୂଳ-ପ୍ରତିକୂଳ ପରିସ୍ଥିତିକୁ ସାଧନ ସାମଗ୍ରୀରେ କେମିତି ପରିଣତ କରାଯାଇ ପାରିବ ? ଅନୁକୂଳ ପରିସ୍ଥିତି ଆସିଗଲା ତ ତାକୁ ଅନ୍ୟର ସେବାରେ, ଅନ୍ୟର ସୁଖ-ଆରାମରେ ଲଗାଇଦେବା, ଏବଂ ପ୍ରତିକୂଳ ପରିସ୍ଥିତି ଆସିଗଲା ତ ସୁଖର ଇଚ୍ଛା ତ୍ୟାଗ କରିଦେବା । ଅନ୍ୟମାନଙ୍କର ସେବାକରିବା ଓ ସୁଖଭୋଗର ଇଚ୍ଛାକୁ ତ୍ୟାଗ କରିଦେବା -ଏହି ଦୁଇଟି ସାଧନା ଅଟେ ।

(୨)

ଶାସ୍ତ୍ରରେ ଆସିଛି କି ପୁଣ୍ୟ ଅଧିକ ହେଲେ ଜୀବ ସ୍ୱର୍ଗକୁ ଯାଏ ଏବଂ ପାପ ଅଧିକ ହେଲେ ଜୀବ ନରକକୁ ଯାଏ ଏବଂ ପୁଣ୍ୟ-ପାପ ସମାନ ହେଲେ ମନୁଷ୍ୟ ଯୋନିରେ ଜନ୍ମହୁଏ । ଏହି ଦୃଷ୍ଟିରୁ କୌଣସି ବର୍ଣ୍ଣ, ଆଶ୍ରମ, ଦେଶ, ବେଶ ଆଦିର କୌଣସି ମନୁଷ୍ୟ ସର୍ବଥା ପୁଣ୍ୟାତ୍ମା କିମ୍ବା ପାପାତ୍ମା ନୁହଁନ୍ତି ।

ପୁଣ୍ୟ-ପାପ ସମାନ ହେବା ଦ୍ୱାରା ଯେଉଁ ମନୁଷ୍ୟର ସୃଷ୍ଟି ହୁଏ । ସେମାନଙ୍କ ମଧ୍ୟରେ ବି ଯଦି ଦେଖାଯାଏ, ତେବେ ପୁଣ୍ୟ-ପାପର ତାରତମ୍ୟ ରହିଥାଏ ଅର୍ଥାତ୍ କାହାର ପୁଣ୍ୟ ଅଧିକ ଥାଏ ଏବଂ କାହାର ପାପ ଅଧିକ ଥାଏ* । ଏହିଭଳି ଗୁଣର ବିଭାଗ ମଧ୍ୟ ଅଛି । ପ୍ରାୟତଃ ସତ୍ତ୍ୱ ଗୁଣର ପ୍ରଧାନତା ଥିବା ମନୁଷ୍ୟ ଊର୍ଦ୍ଧ୍ୱ ଲୋକକୁ ଯାଏ । ରଜୋଗୁଣୀ ମଧ୍ୟ ଲୋକକୁ ଅର୍ଥାତ୍ ମନୁଷ୍ୟ ଲୋକକୁ ଏବଂ ତମୋଗୁଣ ପ୍ରଧାନ ମନୁଷ୍ୟ ଅଧୋଗତିକୁ ପ୍ରାପ୍ତ ହୋଇଥାଏ । ଏହି ତିନିଙ୍କ ମଧ୍ୟରେ ବି ଗୁଣର ତାରତମ୍ୟରୁ ଅନେକ ପ୍ରକାରର ଭେଦ ଦେଖାଯାଏ ।

---

* ଯେମିତି ପରୀକ୍ଷାରେ ଅନେକ ବିଷୟ ଥାଏ । ସେଥି ମଧ୍ୟରୁ କେଉଁ ବିଷୟରେ ଅଧିକ ନମ୍ବର ମିଳେ ତ କେଉଁ ବିଷୟରେ କମ୍ ନମ୍ବର ମିଳେ । ସେହି ସମସ୍ତ ବିଷୟର ନମ୍ବରକୁ ମିଶାଇ ଏକାଠି କରିବା ଦ୍ୱାରା ଯେତିକି ହୁଏ ତାହାଦ୍ୱାରା ପରୀକ୍ଷା ଫଳ ନିର୍ଣ୍ଣୟ ହୋଇଥାଏ । ଏହିଭଳି ପ୍ରତ୍ୟେକ ମନୁଷ୍ୟର କେଉଁ ବିଷୟରେ ପାପ ଅଧିକ ତ କେଉଁ ବିଷୟରେ ପୁଣ୍ୟ ଅଧିକ ଥାଏ । ଏସମସ୍ତ ମିଶାଇ ଯେତିକି ପାପ-ପୁଣ୍ୟ ହୁଏ, ସେହି ଅନୁସାରେ ତାକୁ ଜନ୍ମ ମିଳିଥାଏ । ଯଦିଓ ଅଲଗା-ଅଲଗା ବିଷୟରେ ସମସ୍ତଙ୍କର ପାପ-ପୁଣ୍ୟ ସମାନ ଥାଆନ୍ତା, ତେବେ ସମସ୍ତଙ୍କୁ ବରାବର(ସମାନ ଭାବେ) ଅନୁକୂଳ-ପ୍ରତିକୂଳ ପରିସ୍ଥିତି ମିଳୁଥାନ୍ତା, କିନ୍ତୁ ଏପରି ହେଉନାହିଁ, ସୁତରାଂ ସମସ୍ତଙ୍କର ପାପ-ପୁଣ୍ୟରେ ଅନେକ ପ୍ରକାରର ତାରତମ୍ୟ ରହିଥାଏ । ଏହିକଥା ସତ୍ତ୍ୱଆଦି ଗୁଣ ବିଷୟରେ ମଧ୍ୟ ବୁଝିନେବା ଆବଶ୍ୟକ ।

ସତ୍ତ୍ୱଗୁଣର ପ୍ରଧାନତାରେ ବ୍ରାହ୍ମଣ, ରଜୋଗୁଣର ପ୍ରଧାନତା ଏବଂ ସତ୍ତ୍ୱଗୁଣର ନ୍ୟୂନତାରେ କ୍ଷତ୍ରିୟ, ରଜୋଗୁଣର ପ୍ରଧାନତା ଓ ତମୋଗୁଣର ନ୍ୟୂନତାରେ ବୈଶ୍ୟ ତଥା ତମୋଗୁଣର ପ୍ରଧାନତାରେ ଶୂଦ୍ର ହୋଇଥାଏ । ଏହା ତ ସାଧାରଣ ଭାବେ ଗୁଣକଥା କୁହାଗଲା । ବର୍ତ୍ତମାନ ଏ ମାନଙ୍କର ତାତ୍ତ୍ୱିକ ତାରତମ୍ୟ ବିଷୟରେ ବିଗ୍ଭର କରିବା । ରଜୋଗୁଣ-ପ୍ରଧାନ ମନୁଷ୍ୟମାନଙ୍କ ମଧ୍ୟରୁ ସତ୍ତ୍ୱଗୁଣ ପ୍ରଧାନତା ଥିବା ମନୁଷ୍ୟ ବ୍ରାହ୍ମଣ ହେଲେ, ଏମାନଙ୍କ ମଧ୍ୟରେ ବି ଜନ୍ମ ଭେଦ ଯୋଗୁଁ ଉଚ୍ଚ-ନୀଚ ବ୍ରାହ୍ମଣ ହେଲେ ଏବଂ ପରିସ୍ଥିତି ରୂପରେ କର୍ମ ମାନଙ୍କର ଫଳ ମଧ୍ୟ ସେମାନଙ୍କ ପାଇଁ ଅନେକ ପ୍ରକାରର ଆସେ । ଅର୍ଥାତ୍ ସବୁ ବ୍ରାହ୍ମଣଙ୍କର ଅନୁକୂଳ-ପ୍ରତିକୂଳ ପରିସ୍ଥିତି ମଧ୍ୟ ଅନେକ ପ୍ରକାରର ଆସିଥାଏ । ଏହି ଦୃଷ୍ଟିରୁ ବ୍ରାହ୍ମଣ ଯୋନିରେ ମଧ୍ୟ ତିନିଗୁଣ ମାନିବାକୁ ପଡ଼ିବ । ସେହିପରି କ୍ଷତ୍ରିୟ, ବୈଶ୍ୟ, ଏବଂ ଶୁଦ୍ରଙ୍କ ଭିତରେ ମଧ୍ୟ ଉଚ୍ଚ-ନୀଚ ଥାଆନ୍ତି, ଓ ତାଙ୍କପାଇଁ ଅନୁକୂଳ ପରିସ୍ଥିତି ମଧ୍ୟ ଅନେକ ପ୍ରକାରର ଆସିଥାଏ । ସୁତରାଂ ଗୀତାରେ କୁହାଯାଇଛି କି ତିନି ଲୋକରେ ଏମିତି କିଛି ବସ୍ତୁ ନାହିଁ, ଯାହା କି ତିନି ଗୁଣରୁ ରହିତ ଅଟେ (ଗୀତା୧୮ ।୪୦) ।

ବର୍ତ୍ତମାନ ମନୁଷ୍ୟେତର ଯୋନିରେ ଯେଉଁ ପଶୁ-ପକ୍ଷୀ ଆଦି ଅଛନ୍ତି, ସେମାନଙ୍କର ଭିତରେ ମଧ୍ୟ ଉଚ୍ଚ-ନୀଚ ଅଛନ୍ତି, ଯଥା-ଗାଇ ଆଦି ଶ୍ରେଷ୍ଠ ଅଟନ୍ତି ଏବଂ କୁକୁର, ଗଧ, ଘୁସୁରି ଆଦି ନୀଚ ଅଟନ୍ତି । ପାରା ଆଦି ଶ୍ରେଷ୍ଠ ଅଟନ୍ତି ଏବଂ କୁଆ, ଶାଗୁଣା ଆଦି ନୀଚ । ଏସମସ୍ତଙ୍କୁ ଅନୁକୂଳ-ପ୍ରତିକୂଳ ପରିସ୍ଥିତି ମଧ୍ୟ ସମାନ ମିଳେନାହିଁ । ତାତ୍ପର୍ଯ୍ୟ ଏହିକି ଊର୍ଦ୍ଧ୍ୱଗତି, ମଧ୍ୟଗତି ଓ ଅଧୋଗତି ପ୍ରାପ୍ତ ପ୍ରାଣୀଙ୍କ ଭିତରେ ମଧ୍ୟ ବହୁ ପ୍ରକାରର ଜାତି-ଭେଦ ଓ ପରିସ୍ଥିତି-ଭେଦ ରହିଛି ।(ଗୀତା୧୮, ଶ୍ଳୋକ ସଂ ୪୧ ର ବ୍ୟାଖ୍ୟାରୁ ଉଦ୍ଧୃତ)

***ନାରାୟଣ! ନାରାୟଣ!! ନାରାୟଣ!!!***



# ଜାତି ଜନ୍ମରୁ ମାନିବା ନା କର୍ମରୁ ?

ଉଚ୍ଚ-ନୀଚ ଯୋନି ମାନଙ୍କରେ ଯେତେ ଗୁଡ଼ିଏ ଶରୀର ମିଳୁଛି, ସେ ସବୁ ଗୁଣ ଏବଂ କର୍ମ ଅନୁସାରେ ମିଳୁଛି* । ଗୁଣ ଏବଂ କର୍ମ ଅନୁସାରେ ହିଁ ମନୁଷ୍ୟର ଜନ୍ମ ହୋଇଥାଏ, ଏଣୁ ମନୁଷ୍ୟର ଜାତି ଜନ୍ମରୁ ହିଁ ମାନିବାକୁ ହୁଏ । ସୁତରାଂ ସ୍ଥୂଳ ଶରୀର ଦୃଷ୍ଟିରୁ ବିବାହ, ଭୋଜନ ଆଦି କର୍ମ, ଜନ୍ମର ପ୍ରଧାନତାରେ ହିଁ କରିବା ଉଚିତ୍ । ନିଜର ଜାତି ବା ବର୍ଣ୍ଣର ଅନୁସାରେ ହିଁ ଭୋଜନ, ବିବାହ ଆଦି କର୍ମ ହେବା ଆବଶ୍ୟକ ।

ଦ୍ୱିତୀୟତଃ , ଯେଉଁ ପ୍ରାଣୀମାନଙ୍କର ଉଦ୍ଦେଶ୍ୟ ସାଂସାରିକ ଭୋଗ, ଧନ, ମାନ, ଆରାମ, ସୁଖ ଇତ୍ୟାଦି ପ୍ରାପ୍ତି ପାଇଁ ରହିଛି, ସେମାନଙ୍କ ପାଇଁ ନିଜ ବର୍ଣ୍ଣ ଅନୁସାରେ କର୍ତ୍ତବ୍ୟ-କର୍ମ କରିବା ଏବଂ ବର୍ଣ୍ଣ ମର୍ଯ୍ୟାଦାରେ ଚାଲିବା ଆବଶ୍ୟକ । ଯଦି ବର୍ଣ୍ଣର ମର୍ଯ୍ୟାଦାରେ ସେ ଚାଲନ୍ତି ନାହିଁ, ତେବେ ତାଙ୍କର ଅଧୋପତନ ହୋଇଥାଏ + । ପରନ୍ତୁ ଯାହାଙ୍କର ଉଦ୍ଦେଶ୍ୟ କେବଳ ପରମାତ୍ମା ହିଁ ଅଟନ୍ତି । ସଂସାରର ଭୋଗ ଆଦି ନୁହେଁ, ତାଙ୍କପାଇଁ ସତ୍ସଙ୍ଗ, ସ୍ୱାଧ୍ୟାୟ, ଜପ, ଧ୍ୟାନ, ଭଗବତ୍ ଚର୍ଚ୍ଚା, କୀର୍ତ୍ତନ, ପରସ୍ପର ବିଚାର-ବିନିମୟ ଇତ୍ୟାଦି ଭଗବତ୍ ସମ୍ବନ୍ଧୀୟ କାର୍ଯ୍ୟ ମୁଖ୍ୟ ହୋଇଥାଏ । ତାତ୍ପର୍ଯ୍ୟ ଏହାକି, ପରମାତ୍ମାଙ୍କ ପ୍ରାପ୍ତିରେ ପ୍ରାଣୀର ପାରମାର୍ଥିକ ଭାବ, ଆଚରଣ ଆଦିର ମୁଖ୍ୟତା ରହିଥାଏ, ଜାତି ବା ବର୍ଣ୍ଣର ନୁହେଁ ।

ତୃତୀୟ କଥା, ଯାହାର ଉଦ୍ଦେଶ୍ୟ ପରମାତ୍ମାଙ୍କ ପ୍ରାପ୍ତି ଅଟେ, ସେ ଭଗବତ୍ ସମ୍ବନ୍ଧୀୟ କାର୍ଯ୍ୟକୁ ମୁଖ୍ୟ ରୂପରେ କରି ମଧ୍ୟ ବର୍ଣ୍ଣ-ଆଶ୍ରମ

---

*କାରଣ ଗୁଣସଙ୍ଗୋଽସ୍ୟ ସଦସଦ୍ୟୋନିଜନ୍ମସୁ । ।(ଗୀତା ୧୩ ।୨୧)
କର୍ମଣଃ ସୁକୃତସ୍ୟାହୁଃ ସାତ୍ତ୍ୱିକଂ ନିର୍ମଳଂ ଫଳମ୍ ।
ରଜସସ୍ତୁ ଫଳଂ ଦୁଃଖମଜ୍ଞାନଂ ତମସଃ ଫଳମ୍ । । (ଗୀତା ୧୪ ।୧୬)
ଊର୍ଦ୍ଧ୍ୱଂ ଗଚ୍ଛନ୍ତି ସତ୍ତ୍ୱସ୍ଥା ମଧ୍ୟେ ତିଷ୍ଠନ୍ତି ରାଜସାଃ ।
ଜଘନ୍ୟଗୁଣ ବୃତ୍ତିସ୍ଥା ଅଧୋ ଗଚ୍ଛନ୍ତି ତାମସାଃ । । (ଗୀତା ୧୪ ।୧୮)

+ ଆଚାରହୀନଂ ନ ପୁନନ୍ତି ବେଦା ଯଦପ୍ୟଧୀତାଃ ସହ ଷଡ୍ ଭିରଙ୍ଗୈଃ ।
ଛନ୍ଦାଂସ୍ୟେନଂ ମୃତ୍ୟୁକାଳେ ତ୍ୟଜନ୍ତି ନୀଡ଼ଂ ଶକୁନ୍ତା ଇବଜାତପକ୍ଷାଃ । । (ବସିଷ୍ଠସ୍ମୃତି)

ଶିକ୍ଷା, କଳ୍ପ, ନିରୁକ୍ତ, ଛନ୍ଦ, ବ୍ୟାକରଣ, ଏବଂ ଜ୍ୟୋତିଷ-ଏହି ଛଅଗୋଟି ଅଙ୍ଗ ସହିତ ଅଧ୍ୟୟନ କରିଥିବା ବେଦ ମଧ୍ୟ ଆଚାର ହୀନ ପୁରୁଷକୁ ପବିତ୍ର କରନ୍ତିନାହିଁ । ପକ୍ଷ ଜନ୍ମିଲା ପରେ ଯେମିତି ପକ୍ଷୀ ନିଜର ବସା ଛାଡ଼ିଦିଏ, ସେହିଭଳି ମୃତ୍ୟୁ ସମୟରେ ଆଚାରହୀନ ପୁରୁଷକୁ ବେଦ ଛାଡ଼ିଦିଏ ।

ଅନୁସାରେ ନିଜର କର୍ତ୍ତବ୍ୟ-କର୍ମକୁ ପୂଜନଭାବ ରଖି କେବଳ ଭଗବତ୍ ପ୍ରୀତ୍ୟର୍ଥେ ହିଁ କରେ । ଏଥିପାଇଁ ଭଗବାନ କହିଛନ୍ତି-

**ଯତଃ ପ୍ରବୃତ୍ତିର୍ଭୂତାନାଂ ଯେନ ସର୍ବମିଦଂ ତତମ୍ ।**
**ସ୍ୱକର୍ମଣା ତମଭ୍ୟର୍ଚ୍ଚ ସିଦ୍ଧିଂ ବିନ୍ଦତି ମାନବଃ ।।**

(ଗୀତା ୧୮ ।୪୬) ।

ଏହି ଶ୍ଳୋକରେ ଭଗବାନ୍ ବହୁତ ଶ୍ରେଷ୍ଠକଥାର ନିର୍ଦ୍ଦେଶ ଦେଇଛନ୍ତି, କି ଯାହାଙ୍କ ଠାରୁ ସମ୍ପୂର୍ଣ୍ଣ ସଂସାର ଜନ୍ମିଛି ଏବଂ ଯାହାଙ୍କ ଠାରେ ସମ୍ପୂର୍ଣ୍ଣ ସଂସାର ବ୍ୟାପ୍ତ ଅଛି, ସେହି ପରମାତ୍ମାଙ୍କ ପ୍ରାପ୍ତି ଉଦ୍ଦେଶ୍ୟରେ, ତାଙ୍କର ପ୍ରୀତ୍ୟର୍ଥେ ହିଁ ପୂଜନ-ରୂପରେ ନିଜ-ନିଜ ବର୍ଣ୍ଣ ଅନୁସାରେ କର୍ମ କରାଯିବା ଉଚିତ୍ । ଏଥିରେ ପ୍ରତ୍ୟେକ ମନୁଷ୍ୟଙ୍କର ଅଧିକାର ଅଛି । ଦେବତା, ଅସୁର, ପଶୁ, ପକ୍ଷୀ- ଏମାନଙ୍କର ସ୍ୱତଃ ଅଧିକାର ନାହିଁ । କିନ୍ତୁ ତାଙ୍କପାଇଁ ପରମାତ୍ମାଙ୍କ ତରଫରୁ ନିଷେଧ ମଧ୍ୟ ନାହିଁ, କାରଣ କି ସମସ୍ତେ ପରମାତ୍ମାଙ୍କ ଅଂଶ ହୋଇଥିବାରୁ ପରମାତ୍ମାଙ୍କ ପ୍ରାପ୍ତିରେ ସମସ୍ତେ ଅଧିକାରୀ ଅଟନ୍ତି । ପ୍ରାଣୀ ମାତ୍ରଙ୍କର ପରମାତ୍ମାଙ୍କ ପ୍ରାପ୍ତିରେ ପୂର୍ଣ୍ଣ ଅଧିକାର ଅଛି । ଏଥିରୁ ଏହା ସିଦ୍ଧହେଉଛି କି ପରସ୍ପର ବ୍ୟବହାରରେ ଅର୍ଥାତ୍ ଖାଦ୍ୟ, ବିବାହ ଏବଂ ଶରୀର ସମ୍ବନ୍ଧୀୟ ବ୍ୟବହାର କରିବାରେ 'ଜନ୍ମର' ପ୍ରଧାନତା ଏବଂ ପରମାତ୍ମାଙ୍କ ପ୍ରାପ୍ତିରେ ଭାବ, ବିବେକ ଏବଂ କର୍ମର ପ୍ରଧାନତା ଅଟେ । ଏହି ଦୃଷ୍ଟିକୁ ଆଖିଆଗରେ ରଖି ଭାଗବତକାର କହିଛନ୍ତି କି, ଶାସ୍ତ୍ରରେ ମନୁଷ୍ୟର ବର୍ଣ୍ଣଅନୁସାରେ ଯେଉଁ-ଯେଉଁ ଲକ୍ଷଣ କୁହାଯାଇଛି, ସେହି ଲକ୍ଷଣ ଯଦି କୌଣସି ମନୁଷ୍ୟଠାରେ ପରିଲକ୍ଷିତ ହୁଏ, ତେବେ ତାକୁ ସେହି ବର୍ଣ୍ଣର ମାନିନେବା ଉଚିତ୍ * । ଅଭିପ୍ରାୟ ଏହିକି ଯେ, ବ୍ରାହ୍ମଣର ଶମ, ଦମ ଆଦି ଯେତିକି ଲକ୍ଷଣ ଅଛି, ସେହି ସବୁ ଲକ୍ଷଣ ବା ଗୁଣ ସ୍ୱାଭାବିକ ରୂପେ ଯଦି କାହାଠାରେ ଦେଖାଯାଏ, ତେବେ କେବଳ ଜନ୍ମରେ ନୀଚ ହେଲେ ମଧ୍ୟ ତାକୁ ନୀଚ ମାନିବା ଉଚିତ୍ ନୁହେଁ । ଏହିଭଳି ମହାଭାରତରେ ଯୁଧିଷ୍ଠିର ଏବଂ ନହୁଷଙ୍କ ସମ୍ବାଦରେ ଆସେ କି, ଯେଉଁ ଶୁଦ୍ର ଆଚରଣରେ ଶ୍ରେଷ୍ଠ ଅଟେ, ସେହି ଶୁଦ୍ରକୁ ଶୁଦ୍ର ମାନିବାର କଥା ନୁହେଁ ଏବଂ ଯେଉଁବ୍ରାହ୍ମଣ ବ୍ରାହ୍ମଣୋଚିତ

---

***ଯସ୍ୟ ଯଲ୍ଲକ୍ଷଣଂ ପ୍ରୋକ୍ତଂ ପୁଂସୋ ବର୍ଣ୍ଣାଭିବ୍ୟଞ୍ଜକମ୍ ।**
**ଯଦନ୍ୟତ୍ରାପି ଦୃଶ୍ୟେତ ତତ୍ ତେନୈବ ବିନିର୍ଦ୍ଦିଶେତ୍ ।। (ଶ୍ରୀମଦ୍ଭା· ୭ ।୧୧ ।୩୫)**

କର୍ମରୁ ରହିତ ଅଟେ, ସେହି ବ୍ରାହ୍ମଣଙ୍କୁ ମଧ୍ୟ ବ୍ରାହ୍ମଣ ମାନିବା କଥା ନୁହେଁ* । ଅର୍ଥାତ୍ ଏଠାରେ କର୍ମର ପ୍ରଧାନତା ନିଆଯାଇଛି, ଜନ୍ମର ନୁହେଁ ।

ଶାସ୍ତ୍ରରେ ଏହିଭଳି ଯେଉଁ କେତେକ କଥା ଆସୁଛି, ସେ ସବୁର ତାତ୍ପର୍ଯ୍ୟ ହେଲା, କୌଣସି ନୀଚ ବର୍ଣ୍ଣରେ ଜାତ ସାଧାରଣରୁ-ଅତି ସାଧାରଣ ମନୁଷ୍ୟ ମଧ୍ୟ ନିଜର ପାରମାର୍ଥିକ ଉନ୍ନତି କରିପାରିବେ । ଏଥିରେ କୌଣସି ସନ୍ଦେହର କଥାନାହିଁ । କେବଳ ଏତିକି ନୁହେଁ, ସେ ସେହି ବର୍ଣ୍ଣରେ ରହି ଶମ, ଦମ ଆଦି ଯେଉଁ ସମାନ୍ୟ ଧର୍ମ ଅଛି, ତାକୁ ସାଙ୍ଗୋପାଙ୍ଗ(ପୂର୍ଣ୍ଣତୟା) ପାଳନକରି ନିଜର ଶ୍ରେଷ୍ଠତାକୁ ମଧ୍ୟ ପ୍ରକଟ କରି ପାରିବ । ଜନ୍ମ ତ ପୂର୍ବ କର୍ମାନୁସାରେ ହୋଇଗଲା +, ଏଥିରେ ବିଚରା କଣ କରିପାରିବ ? କିନ୍ତୁ ସେହିଠାରେ(ନୀଚ ବର୍ଣ୍ଣରେ) ରହି ମଧ୍ୟ ସେ ତାର ନୂଆ ଉନ୍ନତି କରିପାରିବ । ସେହି ନୂଆଉନ୍ନତିକୁ ପ୍ରୋତ୍ସାହିତ କରିବାପାଇଁ ଶାସ୍ତ୍ରବଚନ ସହାୟତାକରେ କି ନୀଚ-ବର୍ଣ୍ଣର ବ୍ୟକ୍ତି ନୂତନ ଉନ୍ନତି କରିବାରେ ହତୋତ୍ସାହ ହୁଅନ୍ତୁନାହିଁ । ଯିଏ ଉଚ ବର୍ଣ୍ଣରେ ଜନ୍ମ ହୋଇ ମଧ୍ୟ ବର୍ଣ୍ଣୋଚିତ କାର୍ଯ୍ୟ କରୁନାହିଁ, ତାକୁ ମଧ୍ୟ ନିଜର ବର୍ଣ୍ଣୋଚିତ କାର୍ଯ୍ୟ କରିବାପାଇଁ ପ୍ରୋତ୍ସାହିତ କରାଯାଇଛି, ଯଥା:-

**'ବ୍ରାହ୍ମଣସ୍ୟ ହି ଦେହୋଽୟଂ କ୍ଷୁଦ୍ରକାମାୟ ନେଷ୍ୟତେ ।'**

(ଶ୍ରୀ ମଭାଗ ।୧୧ ।୧୭ ।୪୨)

ଯେଉଁ ବ୍ରାହ୍ମଣ ମାନଙ୍କର ଖାଦ୍ୟ-ପେୟ, ଆଚରଣ ସର୍ବଥା ଭ୍ରଷ୍ଟ ଅଟେ । ସେହି ବ୍ରାହ୍ମଣ ମାନଙ୍କୁ ବଚନ ଦ୍ୱାରା ମଧ୍ୟ ଆଦର କରିବା ଉଚିତ୍ ନୁହେଁ-ଏହା ସ୍ମୃତିରେ ଆସିଛି (ମନୁ ।୪ ।୩୦ ।୧୯୨) । କିନ୍ତୁ ଯାହାର ଆଚରଣ ଶ୍ରେଷ୍ଠ ଅଟେ, ଯିଏ ଭଗବାନଙ୍କର ଭକ୍ତ ଅଟନ୍ତି, ସେହି ବ୍ରାହ୍ମଣ ମାନଙ୍କର ଭାଗବତ ଆଦି ପୁରାଣରେ ଏବଂ ମହାଭାରତ, ରାମାୟଣ ଆଦି ଇତିହାସ-ଗ୍ରନ୍ଥରେ ବହୁତ ମହିମା ଗାନ କରାଯାଇଛି । ଭଗବାନଙ୍କର ଭକ୍ତ

---

*ଶୂଦ୍ରେ ତୁ ଯଦ୍ ଭବେଲ୍ଲକ୍ଷ୍ମ ଦ୍ୱିଜେ ତଚ୍ଚ ନ ବିଦ୍ୟତେ ।
ନ ବୈ ଶୂଦ୍ରୋ ଭବେଚ୍ଛୂଦ୍ରୋ ବ୍ରାହ୍ମଣୋ ନ ଚ ବ୍ରାହ୍ମଣଃ ।।
ଯତ୍ରୈତଲ୍ଲକ୍ଷ୍ୟତେ ସର୍ପ ବୃତ୍ତଂ ସ ବ୍ରାହ୍ମଣଃ ସ୍ମୃତଃ ।
ଯତ୍ରୈତନ୍ନ ଭବେତ୍ ସର୍ପ ତଂ ଶୂଦ୍ରମିତି ନିର୍ଦ୍ଦିଶେତ୍ ।।
(ମହାଭାରତ, ବନପର୍ବ ୧୮୦ ।୨୫-୨୬)

+ସତି ମୂଳେ ତଦ୍ୱିପାକୋ ଜାତ୍ୟାୟୁର୍ଭୋଗାଃ । (ଯୋଗଦର୍ଶନ ୨-୧୩)

ପଛେ ଯେତେ ନୀଚ ଜାତିର ହୋଇଥାଉନା କାହିଁକି, ସେ ଭକ୍ତିହୀନ ବିଦ୍ୱାନ ବ୍ରାହ୍ମଣ ଠାରୁ ଶ୍ରେଷ୍ଠ ଅଟେ* ।

ବ୍ରାହ୍ମଣଙ୍କୁ ବିରାଟରୂପ ଭଗବାନଙ୍କର ମୁଖ, କ୍ଷତ୍ରିୟଙ୍କୁ ହାତ, ବୈଶ୍ୟଙ୍କୁ ଉରୁ (ଜଙ୍ଘ ବା ମଧ୍ୟଭାଗ) ଏବଂ ଶୁଦ୍ରଙ୍କୁ ପାଦ କୁହାଯାଇଛି । ବ୍ରାହ୍ମଣଙ୍କୁ ମୁଖ କହିବାର ତାତ୍ପର୍ଯ୍ୟ ହେଉଛି, କି ତାଙ୍କ ପାଖରେ ଜ୍ଞାନର ସଂଗ୍ରହ ଥାଏ, ତେଣୁ ଚାରି ବର୍ଣ୍ଣଙ୍କୁ ପଢ଼ାଇବା, ଭଲ ଶିକ୍ଷାଦେବା ଏବଂ ଉପଦେଶ ଶୁଣାଇବା-ଏହା ମୁଖର କାମ ଅଟେ । ଏହି ଦୃଷ୍ଟିରୁ ବ୍ରାହ୍ମଣଙ୍କୁ ଉଚ୍ଚ ମାନାଯାଏ ।

କ୍ଷତ୍ରିୟଙ୍କୁ ହାତ କହିବାର ତାତ୍ପର୍ଯ୍ୟ ହେଉଛି, କି ସେ ଚାରିବର୍ଣ୍ଣଙ୍କୁ ଶତ୍ରୁ ମୁଖରୁ ରକ୍ଷା କରିଥାଏ । ରକ୍ଷାକରିବା ମୁଖ୍ୟ ରୂପରେ ହାତର କାମ ଅଟେ, ଯେପରି- ଶରୀରରେ କ୍ଷତ-ବିକ୍ଷତ ହେଲେ ତାହାର ରକ୍ଷା ହାତଦ୍ୱାରା ହିଁ କରାଯାଏ, ଶରୀର ଉପରେ କୌଣସି ଆଘାତ ଆସିଲେ ହାତହିଁ ପ୍ରଥମେ ଅଟକାଇ ଥାଏ । ଏବଂ ନିଜର ରକ୍ଷା ପାଇଁ ଅନ୍ୟଙ୍କୁ ହାତଦ୍ୱାରା ହିଁ ନିବାରଣ କରାଯାଉ ଥିବାରୁ ପ୍ରଥମେ ହାତକୁ ହିଁ କ୍ଷତ-ବିକ୍ଷତ ହେବାକୁ ପଡ଼ିଥାଏ, ଯଦି ମନୁଷ୍ୟ କେଉଁଠି ପଡ଼ିଯାଏ ତେବେ ପ୍ରଥମେ ହାତହିଁ ଭୂମିରେ ଲାଗିଯାଏ । ଏଣୁ କ୍ଷତ୍ରିୟ ହାତ ଅଟେ । ଅରାଜକତା ପଡ଼ିଲେ ଧନ ଏବଂ ଜନର ରକ୍ଷା କରିବା ଚାରି ବର୍ଣ୍ଣର ଧର୍ମ ଅଟେ ।

ବୈଶ୍ୟଙ୍କୁ ମଧ୍ୟଭାଗ କହିବାର ତାତ୍ପର୍ଯ୍ୟ ହେଉଛି, କି ଯେପରି ପେଟରେ

---

*(୧) ଅହୋ ବତ ଶ୍ୱପଚୋଽତୋ ଗରୀୟାନ୍ ଯଜ୍ଜିହ୍ୱାଗ୍ରେ ବର୍ତ୍ତତେ ନାମ ତୁଭ୍ୟମ୍ ।
ତେପୁସ୍ତପସ୍ତେ ଜୁହୁବୁଃ ସସ୍ନୁରାର୍ଯ୍ୟା ବ୍ରହ୍ମାନୂଚୁର୍ନାମ ଗୃଣନ୍ତି ଯେ ତେ ।।
(ଶ୍ରୀମଭାଗ ।୩ ।୩୩ ।୭)

ଅହୋ ! ସେ ଚାଣ୍ଡାଳ ମଧ୍ୟ ସର୍ବଶ୍ରେଷ୍ଠ ଅଟେ, ଯାହାର ଜିହ୍ୱାର ଅଗ୍ର ଭାଗରେ ଆପଣଙ୍କର ନାମ ବିରାଜମାନ ଅଛି । ଯେଉଁ ଶ୍ରେଷ୍ଠ ପୁରୁଷ ଆପଣଙ୍କର ନାମ ଉଚ୍ଚାରଣ କରୁଛନ୍ତି ସେ ତପ, ହୋମ, ତୀର୍ଥସ୍ନାନ, ସଦାଚାର ପାଳନ ଓ ବେଦାଧ୍ୟୟନ- ସବୁକିଛି କରି ନେଇଛନ୍ତି ।

(୨) ବିପ୍ରାଦ୍ ଦ୍ୱିଷଡ୍‌ଗୁଣଯୁତାଦରବିନ୍ଦନାଭପାଦାରବିନ୍ଦବିମୁଖାଚ୍ଛ୍ ବପଚଂ ବରିଷ୍ଠମ୍ ।
ମନ୍ୟେ ତଦର୍ପିତମନୋବଚନେହିତାର୍ଥପ୍ରାଣଂ ପୁନାତି ସ କୁଳଂ ନ ତୁ ଭୂରିମାନଃ ।।
(ଶ୍ରୀମଭାଗ ୭ ।୯ ।୧୦)

ମୋ ବୁଝିବାରେ ଦ୍ୱାଦଶ ଗୁଣରେ ଯୁକ୍ତ ବ୍ରାହ୍ମଣ ମଧ୍ୟ ଯଦି ଭଗବାନ କମଳନାଭଙ୍କ ଚରଣ-କମଳରୁ ବିମୁଖ, ତେବେ ତାଠାରୁ ସେହି ଚାଣ୍ଡାଳ ଶ୍ରେଷ୍ଠ, ଯିଏ ନିଜର ମନ, ବଚନ, କର୍ମ, ଧନ ଏବଂ ପ୍ରାଣକୁ ଭଗବାନଙ୍କ ଠାରେ ଅର୍ପଣ କରି ଦେଇଛି । କାରଣ ସେ ଚାଣ୍ଡାଳ ତ ନିଜର କୁଳ ସମୁହକୁ ବି ପବିତ୍ର କରିଦେଲା, ପରନ୍ତୁ ଶ୍ରେଷ୍ଠତାର ଅଭିମାନ ରଖିଥିବା ଭଗବଦ୍ ବିମୁଖ ବ୍ରାହ୍ମଣ ନିଜକୁ ମଧ୍ୟ ପବିତ୍ର କରି ପାରିଲା ନାହିଁ ।

*****************************************

ଅନ୍ନ, ଜଳ, ଔଷଧ ଆଦି ଦିଆ ଯାଉଥିବାରୁ ସେ ଶରୀରର ସମସ୍ତ ଅବୟବ ଗୁଡ଼ିକୁ ଶକ୍ତି ଯୋଗାଇ ଦିଏ ଏବଂ ଶରୀରକୁ ପୁଷ୍ଟ କରିଥାଏ, ସେହିପରି ବସ୍ତୁମାନ ସଂଗ୍ରହ କରିବା ଯାତାୟାତ କରିବା, ଯେଉଁଠି ଯେଉଁ ଜିନିଷ କମ୍ ଅଛି ସେଠାରେ ବୋହି ପହଞ୍ଚାଇବା, ପ୍ରଜାଙ୍କୁ କୌଣସି ଜନିଷର ଅଭାବ ନ ହେବାକୁ ଦେବା ବୈଶ୍ୟର କାମ ଅଟେ । ପେଟରେ ଅନ୍ନ-ଜଳର ସଂଗ୍ରହ ସମସ୍ତ ଶରୀର ପାଇଁ ହୁଏ, ତତ୍ ସହିତ ପେଟକୁ ମଧ୍ୟ ପୁଷ୍ଟି ମିଳେ, କାହିଁକି ନା ମନୁଷ୍ୟ କେବଳ ପେଟପାଇଁ ପେଟ ଭରେନା । ସେହିଭଳି ବୈଶ୍ୟ ମଧ୍ୟ ଅନ୍ୟ ମାନଙ୍କପାଇଁ ସଂଗ୍ରହ କରେ, କେବଳ ନିଜପାଇଁ ନୁହେଁ । ସେ ବ୍ରାହ୍ମଣ ଆଦିଙ୍କୁ ଦାନ ଦିଏ, କ୍ଷତ୍ରିୟଙ୍କୁ କର ଦିଏ ଏବଂ ନିଜର ପାଳନ କରେ ଓ ଶୁଦ୍ରଙ୍କୁ ପାରିଶ୍ରମିକ ଦିଏ । ଏହିଭଳି ସେ ସମସ୍ତଙ୍କର ପାଳନ କରିଥାଏ । ଯଦି ସେ ସଂଗ୍ରହ କରିବ ନାହିଁ, କୃଷି, ବାଣିଜ୍ୟ ଓ ଗୋପାଳନ କରିବ ନାହିଁ, ତେବେ ଦେବ କିଏ?

ଶୁଦ୍ରକୁ ଚରଣ କହିବାର ତାତ୍ପର୍ଯ୍ୟ ହେଉଛି, କି ଯେମିତି ପାଦ ସମସ୍ତ ଶରୀରକୁ ଉଠାଇ ଚାଲ ବୁଲ କରେ ଏବଂ ସମସ୍ତ ଶରୀରର ସେବା ପାଦଦ୍ୱାରା ହିଁ ହୋଇଥାଏ, ସେହିଭଳି ସେବାର ଆଧାର ଉପରେ ହିଁ ଚାରି ବରି ବର୍ଣ୍ଣ ଚାଲିଥାନ୍ତି । ଶୁଦ୍ର ନିଜର ସେବା-କର୍ମ ଦ୍ୱାରା ସମସ୍ତଙ୍କର ଆବଶ୍ୟକ କାର୍ଯ୍ୟକୁ ପୂର୍ତ୍ତି କରିଦିଏ ।

---

(୩)ଚାଣ୍ଡାଳୋଽପି ମୁନେଃ ଶ୍ରେଷ୍ଠୋ ବିଷ୍ଣୁଭକ୍ତିପରାୟଣଃ ।
ବିଷ୍ଣୁଭକ୍ତିବିହୀନସ୍ତୁ ଦ୍ୱିଜୋଽପି ଶ୍ୱପଚୋଽଧମଃ ।। (ପଦ୍ମପୁରାଣ)

ହରିଭକ୍ତିରେ ଲୀନ ରହୁଥିବା ଚାଣ୍ଡାଳ ମଧ୍ୟ ମୁନିଙ୍କ ଠାରୁ ଶ୍ରେଷ୍ଠ ଏବଂ ହରିଭକ୍ତି ରହିତ ବ୍ରାହ୍ମଣ ଚଣ୍ଡାଳ ଠାରୁ ମଧ୍ୟ ଅଧମ ଅଟେ ।

(୪)ଅବୈଷ୍ଣବାଦ୍ ଦ୍ୱିଜାଦ୍ ବିପ୍ର ଚାଣ୍ଡାଳୋ ବୈଷ୍ଣବୋ ବରଃ ।
ସଗଣଃ ଶ୍ୱପଚୋ ମୁକ୍ତୋ ବ୍ରାହ୍ମଣୋ ନରକଂ ବ୍ରଜେତ୍ ।।
(ବ୍ରହ୍ମବୈବର୍ତ୍ତ, ବ୍ରହ୍ମ ।୧୧ ।୩୯)

ଅବୈଷ୍ଣବ ବ୍ରାହ୍ମଣ ଠାରୁ ବୈଷ୍ଣବ ଚାଣ୍ଡାଳ ଶ୍ରେଷ୍ଠ ଅଟେ । କାହିଁକି ନା, ସେ ବୈଷ୍ଣବ ଚାଣ୍ଡାଳ ନିଜର ବନ୍ଧୁ-ଗଣଙ୍କ ସହିତ ନିଜେ ମଧ୍ୟ ଭବ-ବନ୍ଧନରୁ ମୁକ୍ତ ହୋଇଯାଏ ଏବଂ ସେହି ଅବୈଷ୍ଣବ ବ୍ରାହ୍ମଣ ନରକରେ ପତିତ ହୁଏ ।

(୫) ନ ଶୂଦ୍ରା ଭଗବଦ୍ଭକ୍ତା ବିପ୍ରା ଭାଗବତାଃ ସ୍ମୃତାଃ ।
ସର୍ବବର୍ଣ୍ଣେଷୁ ତେ ଶୂଦ୍ରା ଯେ ହ୍ୟଭକ୍ତା ଜନାର୍ଦ୍ଦନେ ।। (ମହାଭାରତ)

ଯଦି କୌଣସି ଶୁଦ୍ର ଭଗବଦ୍ ଭକ୍ତିରସରେ ବୁଡ଼ିରହିଛି ତେବେ ସେ ଶୁଦ୍ର ନୁହେଁ ବରଂ ପରମ ଶ୍ରେଷ୍ଠ ବ୍ରାହ୍ମଣ ଅଟେ । ବାସ୍ତବରେ ପ୍ରତ୍ୟେକ ବର୍ଣ୍ଣରେ ସେଶୁଦ୍ର ଅଟେ, ଯିଏ ଭଗବଦ୍ ଭକ୍ତିରୁ ରହିତ ।

************************************

ଉକ୍ତ ବିବେଚନାକୁ ବିଚାର ପୂର୍ବକ ଦେଖିଲେ ଜଣାଯାଏ, କି ଗୀତାରେ ଚାରି ବର୍ଣ୍ଣର ସେହିସବୁ ସ୍ୱାଭାବିକ କର୍ମର ବର୍ଣ୍ଣନା ହୋଇଛି, ଯେଉଁ କର୍ମ ସ୍ୱତଃ ହୋଇଥାଏ ଅର୍ଥାତ୍ ଯାହାକୁ କରିବାରେ ଅଧିକ ପରିଶ୍ରମ ପଡ଼େନାହିଁ । ଚାରି ବର୍ଣ୍ଣଙ୍କ ପାଇଁ ଆଉ ମଧ୍ୟ ଅନ୍ୟ କେତେକ କର୍ମର ବିଧାନ ରହିଅଛି, ତାହାକୁ ସ୍ମୃତି ଗ୍ରନ୍ଥ ମାନଙ୍କରେ ଦେଖିବା ଉଚିତ୍ ଓ ସେହି ଅନୁସାରେ ନିଜର ସ୍ୱଭାବ ବନାଇ ଦେବା ଉଚିତ୍ ।

**ତସ୍ମାଚ୍ଛାସ୍ତ୍ରଂ ପ୍ରମାଣଂ ତେ କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ ।**
**ଜ୍ଞାତ୍ୱା ଶାସ୍ତ୍ରବିଧାନୋକ୍ତଂ କର୍ମ କର୍ତ୍ତୁମିହାର୍ହସି ।।**

(ଗୀତା ୧୬ ।୨୪)

ସୁତରାଂ ତୋ ପାଇଁ କର୍ତ୍ତବ୍ୟ ଏବଂ ଅକର୍ତ୍ତବ୍ୟ ବ୍ୟବସ୍ଥାରେ ଶାସ୍ତ୍ର ହିଁ ପ୍ରମାଣ ଅଟେ-ଏହାଜାଣି ତୁ ଏହି ମନୁଷ୍ୟ ଲୋକରେ ଶାସ୍ତ୍ରବିଧି ଦ୍ୱାରା ନିୟତ (ବିଧାନ) କର୍ତ୍ତବ୍ୟ-କର୍ମ କରିବାରେ ସମର୍ଥ ଅଟୁ ।

ବର୍ତ୍ତମାନ ଚାରିଗୋଟି ବର୍ଣ୍ଣର ଲୋକ ମାନଙ୍କ ମଧ୍ୟରେ ମିଶ୍ରଣତା ଆସି ଯାଇଥିଲେ ମଧ୍ୟ, ଯଦି ଚାରି ବର୍ଣ୍ଣର ମନୁଷ୍ୟ ସମୁଦାୟକୁ ଏକତ୍ରିତ କରି ଅଲଗା-ଅଲଗା ସମୁଦାୟ ଦେଖାଯାଏ, ତେବେ ବ୍ରାହ୍ମଣ-ସମୁଦାୟରେ ଶମ, ଦମ ଆଦି ଗୁଣ ଯତିକି ଅଧିକ ମିଳିବ, ସେତିକି କ୍ଷତ୍ରିୟ, ବୈଶ୍ୟ ଏବଂ ଶୁଦ୍ର ସମୁଦାୟରେ ମିଳିବ ନାହିଁ । କ୍ଷତ୍ରିୟ-ସମୁଦାୟରେ ଶୁରବୀରତା, ଶକ୍ତି, ତେଜ, ପ୍ରଭାବ ଆଦି ଗୁଣ ଯେତେ ଅଧିକ ଦେଖିବାକୁ ମିଳିବ, ସେତେ ବ୍ରାହ୍ମଣ ସମୁଦାୟରେ ମିଳିବ ନାହିଁ । ବୈଶ୍ୟ ସମୁଦାୟରେ ବେପାର କରିବା, ଧନ ଉପାର୍ଜନ କରିବା, ଧନକୁ ନିୟନ୍ତ୍ରଣ ଆଦି କରିବାର ଗୁଣ ଯେତିକି ଅଧିକ ମିଳିବ, ସେତିକି ବ୍ରାହ୍ମଣକ୍ଷତ୍ରିୟ ଏବଂ ଶୁଦ୍ର- ସମୁଦାୟରେ ମିଳିବ ନାହିଁ । ଶୁଦ୍ର-ସମୁଦାୟରେ ସେବା କରିବାର ପ୍ରବୃତ୍ତି ଯେତିକି ଅଧିକ ମିଳିବ, ସେତିକି ବ୍ରାହ୍ମଣ, କ୍ଷତ୍ରିୟ ଏବଂ ବୈଶ୍ୟ ସମୁଦାୟରେ ମିଳିବ ନାହିଁ । ତାତ୍ପର୍ଯ୍ୟ ଏହିକି, ଆଜିକାଲି ପ୍ରତ୍ୟେକ ବର୍ଣ୍ଣ ମର୍ଯ୍ୟାଦା ହୀନ ଏବଂ ଉଶୃଙ୍ଖଳ ହେଲେ ମଧ୍ୟ ସେମାନଙ୍କର ସ୍ୱଭାବଜ କର୍ମ ସେମାନଙ୍କର ସମୁଦାୟ ଠାରେ ବିଶେଷ ରୂପେ ଦେଖିବାକୁ ମିଳେ ଅର୍ଥାତ୍ ଏହି ଗୁଣ ବ୍ୟକ୍ତିଗତଭାବେ ଦେଖିଲେ ଜଣାପଡ଼େ ନାହିଁ, ବରଂ ସମୁଦାୟରେ ସ୍ପଷ୍ଟ ପ୍ରତିଫଳିତ ହୋଇଥାଏ ।

ଯେଉଁମାନେ ଶାସ୍ତ୍ରର ଗଭୀର ରହସ୍ୟକୁ ଜାଣନ୍ତି ନାହିଁ, ସେମାନେ କହି

ଦିଅନ୍ତି କି "ବ୍ରାହ୍ମଣଙ୍କ ହାତରେ ଲେଖନି ଥିଲା , ତେଣୁ ସେମାନେ 'ବ୍ରାହ୍ମଣ ସବୁଠୁ ବଡ଼' ବୋଲି ଲେଖିଦେଇ ବ୍ରାହ୍ମଣଙ୍କୁ ସର୍ବୋଚ୍ଚ ପଦବି ଦେଇଦେଲେ" । ଯେଉଁ ମାନଙ୍କ ପାଖରେ ରାଜ୍ୟଥିଲା ସେମାନେ ବ୍ରାହ୍ମଣଙ୍କୁ କହିଲେ-କଣ ଗୋସେଇଁ ! ଆମେମାନେ କଣ କିଛି ନୋହୁଁ ? ତ ବ୍ରାହ୍ମଣ ମାନେ କହିଲେ-ନା-ନା, ସେ କଥା ନୁହେଁ, ତୁମେମାନେ ମଧ୍ୟ ଦୁଇ ନମ୍ବରରେ ଅଛ, ସେଇଠୁ ବୈଶ୍ୟମାନେ ବ୍ରାହ୍ମଣଙ୍କୁ କହିଲେ-କଣ ଗୋସେଇଁ ! ଆମ ବିନା ଆପଣଙ୍କର କେମିତି ଜୀବିକା ଚାଲିବ ? ବ୍ରାହ୍ମଣମାନେ କହିଲେ ହଁ, ତୁମେମାନେ ତିନି ନମ୍ବରରେ ଅଛ । ଯାହା ପାଖରେ ନାଁ ରାଜ୍ୟଥିଲା, ନାଁ ଧନଥିଲା ସେମାନେ ଯେତେବେଳେ ଉପରକୁ ଉଠିବାକୁ ଲାଗିଲେ, ସେତେବେଳେ ବ୍ରାହ୍ମଣମାନେ କହିଲେ- ତୁମ ଭାଗ୍ୟରେ ରାଜ୍ୟ ଏବଂ ଧନ କିଛିହେଲେ ଲେଖାନାହିଁ । ତୁମେମାନେ ବ୍ରାହ୍ମଣ, କ୍ଷତ୍ରିୟ ଏବଂ ବୈଶ୍ୟ ମାନଙ୍କର ସେବାକର । ଏଣୁ ତୁମେମାନେ ଚତୁର୍ଥ ନମ୍ବରରେ ରହିଲ । ଏହିଭଳି ସମସ୍ତଙ୍କୁ ଭଣ୍ଡାଇ ବିଦ୍ୟା, ରାଜ୍ୟ ଏବଂ ଧନ ପ୍ରଭାବରେ ତିନିଜାତି ନିଜଭିତରେ ଏକତା କରି ଚତୁର୍ଥ ବର୍ଣ୍ଣକୁ ପଦଦଳିତ କରିଦେଇଛନ୍ତି- ଏହା କେବଳ ଲେଖନକାରୀ ବ୍ରାହ୍ମଣଙ୍କର ସ୍ୱାର୍ଥଭାବ ତଥା ଅଭିମାନ ଅଟେ ।" ଏହାର ସମାଧାନ ହେଲା, ବ୍ରାହ୍ମଣ କେଉଁଠାରେ ମଧ୍ୟ ନିଜର ବ୍ରାହ୍ମଣ ଧର୍ମପାଇଁ ଏପରି ଲେଖିନାହାଁନ୍ତି କି, ବ୍ରାହ୍ମଣ ସର୍ବୋଚ୍ଚ ଅଟନ୍ତି । ଏଣୁ ସେମାନେ ବଡ଼ ଆରାମରେ ରହିବେ, ଧନ-ସମ୍ପତ୍ତିଯୁକ୍ତ ହୋଇ ମୌଜ କରିବେ ଇତ୍ୟାଦି; ବରଂ ବ୍ରାହ୍ମଣଙ୍କପାଇଁ ଏହା ଲେଖାଯାଇଛି, କି ସେମାନଙ୍କୁ ତ୍ୟାଗକରିବା, କଷ୍ଟ ସହିବା ଏବଂ ତପସ୍ୟା କରିବା ଉଚିତ୍ ।

ଗୃହସ୍ଥରେ ରହି ମଧ୍ୟ ସେମାନେ ଧନସଂଗ୍ରହ କରିବେ ନାହିଁ । ଅନ୍ନର ସଂଗ୍ରହ ବି ଅଳ୍ପକରିବେ- କୁମ୍ଭୀଧାନ୍ୟ ଅର୍ଥାତ୍ ଏକ କଳସ ପୂର୍ଣ୍ଣ ଶସ୍ୟରୁ ଅଧିକ ସଂଗ୍ରହ କରିବେ ନାହିଁ, ଲୌକିକ ଭୋଗରେ କଦାପି ଆସକ୍ତ ହେବେନାହିଁ ଏବଂ ଜୀବନ-ନିର୍ବାହ ପାଇଁ ଅନ୍ୟଠାରୁ ଯଦି ଦାନ ଆଣନ୍ତି, ତେବେ ତାର କାମକରି ଅର୍ଥାତ୍ ଯଜ୍ଞ, ହୋମ, ଜପ, ପାଠ ଆଦି କରି ଆଣିବେ । ଗୋଦାନ ଆଦି ଗ୍ରହଣ କଲେ, ନିଜେ ପ୍ରାୟଶ୍ଚିତ୍ତ କରିବେ ।

ଯଦି କୌଣସି ବ୍ରାହ୍ମଣକୁ ଶ୍ରାଦ୍ଧର ନିମନ୍ତ୍ରଣ ଦେବାକୁ ଚାହଁ, ତେବେ ଶ୍ରାଦ୍ଧର ପୂର୍ବଦିନ ଦେବ । ଯଦ୍ଵାରା ବ୍ରାହ୍ମାଣ ତାର ପିତୃ-ପୁରୁଷଙ୍କୁ ନିଜଠାରେ

ଆବାହନ କରି ରାତ୍ରିରେ ବ୍ରହ୍ମଚର୍ଯ୍ୟ ପାଳନ ଏବଂ ସଂଯମ ପୂର୍ବକ ରହି ପାରିବ । ଦ୍ୱିତୀୟ ଦିନ ସେ ଯଜମାନର ପିତରଙ୍କୁ ପିଣ୍ଡଦାନ, ତର୍ପଣ ଠିକ୍ ବିଧି-ବିଧାନରେ କରିବ ଓ ତାପରେ ଭୋଜନ କରିବ । ନିମନ୍ତ୍ରଣ ଓ ଭୋଜନ ଏକଦିନରେ ଗୋଟିଏ ଯଜମାନର ସ୍ୱୀକାର କରିବା ବିଧେୟ । ଶ୍ରାଦ୍ଧର ଅନ୍ନ ଖାଇବାପରେ ଗାୟତ୍ରୀ-ଜପ ଆଦି କରି ଶୁଦ୍ଧହେବା ଆବଶ୍ୟକ । ଦାନନେବା, ଶ୍ରାଦ୍ଧର ଭୋଜନ କରିବା ବ୍ରାହ୍ମଣପାଇଁ କୌଣସି ଉଚ୍ଚକୋଟିର କାମ ନୁହେଁ । ବ୍ରାହ୍ମଣର ଉଚ୍ଚକାର୍ଯ୍ୟ ତ୍ୟାଗରେ । ସେ କେବଳ ଯଜମାନର ପିତୃ-ପୁରୁଷଙ୍କ କଲ୍ୟାଣ କରିବା ଉଦ୍ଦେଶ୍ୟରେ ହିଁ ଶ୍ରାଦ୍ଧର ଭୋଜନ ଏବଂ ଦକ୍ଷିଣା ସ୍ୱୀକାର କରନ୍ତି,ସ୍ୱାର୍ଥ ଭାବନାରେ ନୁହେଁ, ସୁତରାଂ ଏହା ମଧ୍ୟ ତାଙ୍କର ତ୍ୟାଗ ଅଟେ ।

ବ୍ରାହ୍ମଣମାନେ ନିଜ ଜୀବିକା ପାଇଁ ଋତ, ଅମୃତ, ସତ୍ୟାନୃତ ଏବଂ ପ୍ରମୃତ- ଏହି ପାଞ୍ଚଗୋଟି ବୃତି କହିଛନ୍ତି * ।

(୧) ଋତ-ବୃତ୍ତି ସର୍ବୋଚ୍ଚ ଅଟେ । ଏହାକୁ ଶିଳୋଞ୍ଛ ବା କପୋତ ବୃତ୍ତି ମଧ୍ୟ କୁହାଯାଏ । କୃଷକ ଜମିରୁ ଧାନ କାଟିନେବା ପରେ ଯେଉଁ ଧାନକେଣ୍ଡା, ଧାନସିଶା ଆଦି ଭୂମିରେ ପଡ଼େ, ତାହା ଭୂଦେବ ବ୍ରାହ୍ମଣଙ୍କର ଅଟେ, ଅର୍ଥାତ୍ ସେଗୁଡ଼ିକୁ ଗୋଟାଇ ନିଜର ଜୀବନ-ନିର୍ବାହ କରିବା **'ଶିଳୋଞ୍ଛ ବୃତ୍ତି'** ଅଟେ । ଅଥବା ଧାନକାଣ୍ଡି ଆଦି ଯେଉଁଠି ଧାନ ଅମଳ ବା ମାପ ହୁଏ, ସେଠାରେ ପୃଥିବୀ ଉପରେ ପଡ଼ିଥିବା ଧାନ ଭୂଦେବଙ୍କର ଅଟେ, ତଥା ତାହାକୁ ସଂଗ୍ରହ କରି ଜୀବିକା-ନିର୍ବାହ କରିବା **'କପୋତ ବୃତ୍ତି'** ଅଟେ ।

(୨) ବିନା ମାଗିବାରେ ଏବଂ ବିନା ଇଙ୍ଗିତରେ ଯଦି କୌଣସି ଯଜମାନ ଘରକୁ ଆସି କିଛି ଦିଏ, ତେବେ କେବଳ ଶରୀର-ନିର୍ବାହପାଇଁ ଆବଶ୍ୟକ ଜିନିଷ ରଖି ଅବଶିଷ୍ଟ ଫେରାଇ ଦେବା **'ଅମୃତ-ବୃତ୍ତି'** ଅଟେ, ଏହାକୁ **'ଅଯାଚିତ ବୃତ୍ତି'** ମଧ୍ୟ କୁହାଯାଏ ।

(୩) ପ୍ରଭାତରୁ ଭିକ୍ଷାପାଇଁ ଗ୍ରାମକୁ ଯିବା ଏବଂ ଲୋକ ମାନଙ୍କୁ ବାର, ତିଥି, ମୁହୂର୍ତ୍ତ ଆଦି କହି(ଏହିପରି କାମକରି) ଭିକ୍ଷାରେ ଯାହାକିଛି ମିଳିବ,

---

*ଋତାମୃତାଭ୍ୟାଂ ଜୀବେତ୍ତୁ ମୃତେନ ପ୍ରମୃତେନ ବା ।
ସତ୍ୟାନୃତାଭ୍ୟାମପି ବା ନ ଶ୍ୱବୃତ୍ତ୍ୟା କଦାଚନ ।। (ମନୁସ୍ମୃତି ୪।୪)
ଋତ, ଅମୃତ ,ମୃତ, ପ୍ରମୃତ ଏବଂ ସତ୍ୟାନୃତ- ଏହା ମଧ୍ୟରୁ ଯେ କୌଣସି ବୃତ୍ତି ଦ୍ୱାରା ଜୀବନ-ନିର୍ବାହ କରାଯାଇ ପାରିବ, ପରନ୍ତୁ ଶ୍ୱାନବୃତ୍ତି ଅର୍ଥାତ୍ ସେବା ବୃତ୍ତିରେ କେବେହେଲେ ଜୀବନ ନିର୍ବାହ କରିବ ନାହିଁ ।

ତାହାଦ୍ୱାରା ଜୀବନ-ନିର୍ବାହ କରିବା **'ମୃତ-ବୃତ୍ତି'** ଅଟେ ।

(୪) ବ୍ୟାପାର-ବାଣିଜ୍ୟ କରି ଜୀବନ-ନିର୍ବାହ କରିବା **'ସତ୍ୟାନୃତ୍ୟ ବୃତ୍ତି'** ଅଟେ ।

(୫) ଉପରୋକ୍ତ ଚାରିଗୋଟି ବୃତ୍ତିଦ୍ୱାରା ଯଦି ଜୀବନ-ନିର୍ବାହ ନ ହେଲା, ତେବେ କୃଷି କରିବ, କିନ୍ତୁ ତାହା କଠୋର ବିଧ-ବିଧାନରେ କରାଯିବ; ଯଥା- ଗୋଟିଏ ବଳଦରେ ହଳକରିବ ନାହିଁ, ଖରାବେଳେ ହଳକରିବ ନାହିଁ ଆଦି, ଏହା**'ପ୍ରମୃତ-ବୃତ୍ତି'** ଅଟେ ।

ଉପରୋକ୍ତ ବୃତ୍ତିରୁ ଯେକୌଣସି ବୃତ୍ତିରେ ଜୀବିକା ନିର୍ବାହ କଲେ ମଧ୍ୟ ପ୍ରଥମେ ପଞ୍ଚ ମହାଯଜ୍ଞ, ଅତିଥି ସେବା କରି ଯଜ୍ଞଶେଷ ବଳକା ଅନ୍ନ ଭୋଜନ କରିବା ଆବଶ୍ୟକ ।*

ଶ୍ରୀମଦ୍‌ଭଗବଦ୍ ଗୀତା ଉପରେ ଗଭୀର ବିଚାର କଲେ ଦେଖାଯାଏ କି ବ୍ରାହ୍ମଣ ପାଇଁ ପାଳନୀୟ ଯେଉଁ ନଅଟି ସ୍ୱାଭାବିକ ଧର୍ମର ନିର୍ଦ୍ଦେଶ କରାଯଇଛି, ସେଥି ମଧ୍ୟରୁ ଜୀବିକା ଉପାର୍ଜନ ହେଉଥିବାଭଳି ଧର୍ମ ଗୋଟିଏ ମଧ୍ୟ ନାହିଁ । କ୍ଷତ୍ରିୟ ପାଇଁ ଯେଉଁ ସାତଗୋଟି ସ୍ୱଭାବିକ ଧର୍ମର ନିର୍ଦ୍ଦେଶ କରାଯାଇଛି । ସେଥି ମଧ୍ୟରୁ ଯୁଦ୍ଧ କରିବା ଓ ଶାସନ କରିବା ଏହି ଦୁଇଟି ଧର୍ମରେ ଅଳ୍ପକିଛି ଜୀବିକା ଉପାର୍ଜନ କରାଯାଇ ପାରିବ । ବୈଶ୍ୟ ପାଇଁ ତିନୋଟି ଧର୍ମର ନିର୍ଦ୍ଦେଶ କରାଯାଇଛି- କୃଷି, ଗୋରକ୍ଷା ଏବଂ ବ୍ୟାପାର, ଏହି ତିନୋଟି ଯାକରେ ଜୀବିକା ଉପାର୍ଜନ କରାଯାଇ ପାରିବ । ଶୁଦ୍ରପାଇଁ କେବଳ ଗୋଟିଏ ସେବା ଧର୍ମର ନିର୍ଦ୍ଦେଶ ଦିଆଯାଇଛି, ଯେଉଁଥିରେ କେବଳ ଆମଦାନୀ ହୁଏ ଓ ତାଙ୍କପାଇଁ ଖାଦ୍ୟ-ପେୟ, ଜୀବନ-ନିର୍ବାହ ଆଦିରେ ମଧ୍ୟ ବହୁତ ଛାଡ଼ କରିଦିଆଯାଇଛି ।

ଭଗବାନ, **'ସ୍ୱେ ସ୍ୱେ କର୍ମଣ୍ୟଭିରତଃ ସଂସିଦ୍ଧିଂ ଲଭତେ ନରଃ'**

---

*ବ୍ରାହ୍ମଣ ଏବଂ କ୍ଷତ୍ରିୟ ପାଇଁ ଏହା ନିଷେଧ କରାଯାଇଛି କି ସେ 'ସ୍ୱବୃତ୍ତି' ଅର୍ଥାତ୍ ସେବା ବୃତ୍ତି କେବେ କରିବ ନାହିଁ-'ନ ଶ୍ୱବୃତ୍ତ୍ୟା କଦାଚନ' (ମନୁ ।୪ ।୪) **ସେବା ଶ୍ୱବୃତ୍ତିରାରଖ୍ୟାତା ତସ୍ମାତ୍ତାଂ ପରିବର୍ଜୟେତ୍'** (ମନୁ·୪ ।୬) ବାସ୍ତବରେ ସେବା ବୃତ୍ତିର ହିଁ ନିଷେଧ କରାଯାଇଛି, କିନ୍ତୁ ସେବାର ନୁହେଁ । ମାତା-ପିତାଙ୍କ ସନ୍ତାନ ସେବାଭଳି, ସେ ନୀଚ-ରୁ-ନୀଚ ବର୍ଣ୍ଣର ନୀଚ-ରୁ-ନୀଚ ସେବା ମଧ୍ୟ କରି ପାରିବ । ନୀଚ ବର୍ଣ୍ଣର ସେବା କରିବା ଦ୍ୱାରା ହିଁ ତାର ମହତ୍ତ୍ୱ ବଢ଼େ । ଏଣୁ ବୃତ୍ତିର ନିନ୍ଦା କରାଯାଇଛି । ମାନ ବଡ଼ାଇ, ଉପାର୍ଜନ ଆଦି ନିଜର ସ୍ୱାର୍ଥପାଇଁ କଲେ ସେଥିରେ ନିନ୍ଦା ହୁଏ । ନଚେତ୍ ସ୍ୱାର୍ଥ ତ୍ୟାଗ ପୂର୍ବକ ଅନ୍ୟର ସେବାକଲେ ସେଥିରେ ନିନ୍ଦା ହୁଏନାହିଁ ।

(ଗୀତା ।୧୮ ।୪୫) ପଦରେ କେତେବଡ଼ ବିଚିତ୍ର କଥା କହିଛନ୍ତି କି ଶମ, ଦମ ଆଦି ନଅଗୋଟି ଧର୍ମ ପାଳନ କରିବା ଦ୍ୱାରା ଯେଉଁ କଲ୍ୟାଣ ବ୍ରାହ୍ମଣର ହୁଏ, ସେହି କଲ୍ୟାଣ ଶୌର୍ଯ୍ୟ, ତେଜ ଆଦି ସାତଗୋଟି ଧର୍ମ ପାଳନ କରିବା ଦ୍ୱାରା କ୍ଷତ୍ରିୟର ଏବଂ ସେହି କଲ୍ୟାଣ କୃଷି, ଗୋରକ୍ଷା ଏବଂ ବାଣିଜ୍ୟ ଦ୍ୱାରା ବୈଶ୍ୟର ତଥା ସେହି କଲ୍ୟାଣ କେବଳ ସେବା କରିବା ଦ୍ୱାରା ଶୁଦ୍ରର ହୋଇଯାଏ ।

ଆଗକୁ ଭଗବାନ ଏକ ବିଲକ୍ଷଣ କଥା କହିଛନ୍ତି କି ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏବଂ ଶୁଦ୍ର-ଏମାନେ ନିଜ-ନିଜର ବର୍ଣ୍ଣୋଚିତ କର୍ମ ଦ୍ୱାରା ସେହି ପରମାତ୍ମଙ୍କର ପୂଜା-ଅର୍ଚ୍ଚନା କରି ପରମ ସିଦ୍ଧିକୁ ପ୍ରାପ୍ତ ହୋଇଯାଆନ୍ତି-**'ସ୍ୱକର୍ମଣା ତମଭ୍ୟର୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବାଃ'** (ଗୀତା· ୧୮ ।୪୬)' ବାସ୍ତବରେ କଲ୍ୟାଣ ବର୍ଣ୍ଣୋଚିତ କର୍ମଦ୍ୱାରା ହୁଏନାହିଁ, ବରଂ ନିଷ୍କାମ ଭାବ ପୂର୍ବକ ପୂଜନ ଦ୍ୱାରା ହିଁ ହୁଏ । ଶୁଦ୍ରର ତ ସ୍ୱଭାବିକ କର୍ମ ହିଁ ପରିଚର୍ଯ୍ୟାତ୍ମକ ଅର୍ଥାତ୍ ପୂଜନ ରୂପ ଅଟେ, ଅତଏବ ସେ ପୂଜା (ସେବା) ଦ୍ୱାରା ହିଁ ପରମାତ୍ମାଙ୍କର ପୂଜା-ଅର୍ଚ୍ଚନା କରେ ଅର୍ଥାତ୍ ତା ଦ୍ୱାରା ଦୁଇଗୁଣ ପୂଜା ହୋଇଥାଏ ! ଏଣୁ ତାହାର କଲ୍ୟାଣ ଯେତେ ଶିଘ୍ର ହୁଏ ସେତେଶିଘ୍ର ବ୍ରାହ୍ମଣ ଆଦିଙ୍କର ହୁଏନାହିଁ ।

ଶାସ୍ତ୍ରକାର ମାନେ ଉଦ୍ଧାର କରିବା ପାଇଁ ଛୋଟ ମାନଙ୍କୁ ବହୁତ ସ୍ନେହ ପ୍ରଦାନ କରିଛନ୍ତି । କାହିଁକି ନା, ଛୋଟ ସ୍ନେହର ପାତ୍ର ଏବଂ ବଡ଼ ଅଧିକାରର ପାତ୍ର ଅଟେ । ବଡ଼ଉପରେ ଦାୟିତ୍ୱ, ଚିନ୍ତା ଆଦି ବହୁତ ରହେ । ଛୋଟ ଉପରେ କୌଣସି ବି ଭାର ରହେନାହିଁ । ଶୁଦ୍ରକୁ ଭାରଶୂନ୍ୟ କରିଦେବା ସହିତ ଖାଦ୍ୟ-ପେୟ ସମ୍ବନ୍ଧୀୟ ନିୟମକୁ କୋହଳ କରାଯିବା ସହିତ ବିଶେଷ ସ୍ନେହ ମଧ୍ୟ ଦିଆଯାଇଛି ।

ବାସ୍ତବରେ ଦେଖିବାକୁ ଗଲେ ବର୍ଣ୍ଣ-ଆଶ୍ରମରେ ଯିଏ ଯେତିକି ଉଚ୍ଚରେ ଥାଏ, ତାପାଇଁ ଶାସ୍ତ୍ରାନୁସାରେ ସେତିକି କଠିନ ନିୟମ ହିଁ ଲାଗୁ ହୁଏ । ସେହି ନିୟମ ଗୁଡ଼ିକୁ ପୂର୍ଣ୍ଣ ପାଳନ କରିବାପାଇଁ କଠୋର ଶୃଙ୍ଖଳାରେ ଚଳିବାକୁ ପଡ଼େ । କିନ୍ତୁ ଯିଏ ବର୍ଣ୍ଣ-ଆଶ୍ରମରେ ନିଚା ଅଟେ, ତାର କଲ୍ୟାଣ ସୁଗମତା ପୂର୍ବକ ହୋଇଥାଏ । ଏହି ବିଷୟରେ ବିଷ୍ଣୁ ପୁରାଣରେ ଗୋଟିଏ କଥା ଆସିଛି- ଥରେ ବହୁତଋଷି-ମୁନି ଏକତ୍ରିତ ହୋଇ ଶ୍ରେଷ୍ଠତାର ନିର୍ଣ୍ଣୟ କରିବା

ପାଇଁ ଭଗବାନ୍ ବେଦବ୍ୟାସଙ୍କ ପାଖକୁ ଗଲେ । ବ୍ୟସଦେବ ଆଦର ପୂର୍ବକ ସମସ୍ତଙ୍କୁ ବସାଇ ଗଙ୍ଗାକୁ ସ୍ନାନ ପାଇଁ ଗଲେ, ଗଙ୍ଗାରେ ସ୍ନାନ କରିବା ସମୟରେ ବ୍ୟାସଦେବ କହିଲେ- କଳିଯୁଗ ତୁ ଧନ୍ୟ, ସ୍ତ୍ରୀ ଜାତି ତୁମେ ଧନ୍ୟ, ଶୁଦ୍ର ତୁମେ ଧନ୍ୟ ! ବ୍ୟାସଦେବ ସ୍ନାନ ସାରି ଋଷି ମାନଙ୍କ ପାଖକୁ ଆସିବାମାତ୍ରେ ସେମାନେ ପଚାରିଲେ- ମହାରାଜ ! ଆପଣ କଳିଯୁଗ, ସ୍ତ୍ରୀ ତଥା ଶୁଦ୍ର- ଏମାନଙ୍କୁ ଧନ୍ୟବାଦ କାହିଁକି ଦେଲେ? ବ୍ୟାସଦେବ କହିଲେ କି କଳିଯୁଗରେ ନିଜ ଧର୍ମର ପାଳନ କରିବା ଦ୍ୱାରା ସ୍ତ୍ରୀ ଏବଂ ଶୁଦ୍ର ମାନଙ୍କର କଲ୍ୟାଣ ଶିଘ୍ର ଏବଂ ସୁଗମତା ପୂର୍ବକ ହୋଇଥାଏ ।

ଏଠାରେ ପୁଣି ଅନ୍ୟ ଏକ କଥା ବୁଝିବାର ଅଛି କି ଯିଏ ନିଜ ସ୍ୱାର୍ଥ ପାଇଁ କାମ କରେ, ସେ ସମାଜରେ ଏବଂ ସଂସାରରେ ଆଦରର ପାତ୍ର ହୁଏନାହିଁ । କେବଳ ସମାଜରେ ନୁହେଁ, ଘରେ ମଧ୍ୟ ଯିଏ ଖାଇବା ବିଷୟରେ ଲୁଚା ଚୋରା କରି କେବଳ ନିଜ ପେଟ ପୂଜାକରେ, ସେହିପରି ସ୍ୱାର୍ଥ ପରାୟଣ ମନୁଷ୍ୟଙ୍କୁ ଅନ୍ୟମାନେ ନିନ୍ଦା କରନ୍ତି । ବ୍ରାହ୍ମଣ ମାନେ ସ୍ୱାର୍ଥ-ଦୃଷ୍ଟିକୁ ଆଖି ଆଗରେ ରଖି ନିଜ ମୁହଁରେ ନିଜର ପ୍ରଶଂସା ବା ଶ୍ରେଷ୍ଠତାକୁ ଆଦର ଦେଇନାହାଁନ୍ତି ବରଂ ସେମାନେ ବ୍ରାହ୍ମଣଙ୍କ ପାଇଁ ତ୍ୟାଗକୁ ହିଁ ଶ୍ରେଷ୍ଠବୋଲି କହିଛନ୍ତି । ସାତ୍ତ୍ୱିକ ମନୁଷ୍ୟ ନିଜର ପ୍ରଶଂସା କରେ ନାହିଁ, ବରଂ ସେ ଅନ୍ୟର ପ୍ରଶଂସା, ଅନ୍ୟର ଆଦର କରେ । ତାତ୍ପର୍ଯ୍ୟ ଏହିକି, ବ୍ରାହ୍ମଣ ମାନେ କେବେ ନିଜର ସ୍ୱାର୍ଥ ଓ ଅଭିମାନର କଥା କହିନାହାଁନ୍ତି । ଯଦି ସେମାନେ ନିଜ ସ୍ୱାର୍ଥ ଏବଂ ଅଭିମାନ କଥା କହିଥାନ୍ତେ, ତେବେ ସେମାନେ ଏତେ ଆଦରଣୀୟ ହୋଇ ନଥାନ୍ତେ, ସଂସାରରେ ଏବଂ ଶାସ୍ତ୍ରରେ ଆଦର ପାଇ ନ ଥାନ୍ତେ । ସେ ଯେଉଁ ଆଦର ପାଉଛନ୍ତି ତାହା ତ୍ୟାଗ ଦ୍ୱାରା ହିଁ ପାଉଛନ୍ତି ।

ଏହିଭଳି ମନୁଷ୍ୟମାନଙ୍କୁ ଶାସ୍ତ୍ରର ଗଭୀର ଅଧ୍ୟୟନ କରି ଉପରୋକ୍ତ ସମସ୍ତ କଥାକୁ ବୁଝିବା ଆବଶ୍ୟକ । ନଜାଣି-ନଶୁଣି ଋଷି-ମୁନି ମାନଙ୍କ ଉପରେ, ଶାସ୍ତ୍ରକାରଙ୍କ ଉପରେ ମିଥ୍ୟା ଆକ୍ଷେପ (ଦୋଷ) କରିବା ସର୍ବଥା ଅନୁଚିତ୍ ।

ଉଚ୍ଚ-ନୀଚ ବର୍ଣ୍ଣରେ ପ୍ରାଣୀମାନଙ୍କର ଜନ୍ମ ମୁଖ୍ୟ ରୂପେ ଗୁଣ ଏବଂ କର୍ମ ଅନୁସାରେ ହୁଏ- **'ଚାତୁର୍ବର୍ଣ୍ୟ ମୟା ସୃଷ୍ଟ ଗୁଣକର୍ମ ବିଭାଗଶଃ'** (ଗୀତା ।୪ ।୧୩) । କିନ୍ତୁ ଋଣାନୁବନ୍ଧ, ଅଭିଶାପ, ବରଦାନ, ସଙ୍ଗଦୋଷ

ଆଦି କେତେକ କାରଣ ଯୋଗୁଁ ମଧ୍ୟ ଉଚ୍ଚ-ନୀଚ ବର୍ଣ୍ଣରେ ଜନ୍ମ ମିଳିଯାଏ । ସେହି ବର୍ଣ୍ଣରେ ଜନ୍ମ ହୋଇ ମଧ୍ୟ ସେମାନେ ନିଜର ପୂର୍ବ ସ୍ୱଭାବ ଅନୁସାରେ କର୍ମ କରନ୍ତି । ତେଣୁ ଉଚ୍ଚ ବର୍ଣ୍ଣରେ ଜନ୍ମହୋଇଥିଲେ ମଧ୍ୟ ତାଙ୍କଠାରେ ନୀଚ (ଖରାପ) ଆଚରଣ ଦେଖିବାକୁ ମିଳେ ଯଥା- ଧୁନ୍ଧୁକାରୀ ଆଦି, ଏବଂ ନୀଚ-ବର୍ଣ୍ଣରେ ଜନ୍ମ ହୋଇଥିଲେ ମଧ୍ୟ କେତେକ ବ୍ୟକ୍ତି ମହାପୁରୁଷ ହୋଇଯାଆନ୍ତି ଯଥା- ବିଦୁର, କବିର, ରୈଦାସ ଇତ୍ୟାଦି ।

ଆଜିକାଲି ଯେଉଁ ସମୁଦାୟରେ ଜାତିଗତ, କୁଳ ପରମ୍ପରାଗତ, ସମାଜଗତ ଏବଂ ବ୍ୟକ୍ତିଗତ ଯାହାବି ଶାସ୍ତ୍ର-ବିପରୀତ ଦୋଷ ଆସିଯାଇଛି, ତାହାକୁ ନିଜର ସ୍ୱାଧ୍ୟାୟ ଆଦି ଦ୍ୱାରା ଦୂରକରି ନିଜଠାରେ ସ୍ୱଚ୍ଛତା, ନିର୍ମଳତା, ପବିତ୍ରତା ଆଣିବା ଉଚିତ୍ ଯଦ୍ଦ୍ୱାରା ନିଜ ମନୁଷ୍ୟ ଜନ୍ମର ଧ୍ୟେୟ ସିଦ୍ଧ (ସଫଳ) ହୋଇପାରିବ । (ଗୀତା ଅଧ୍ୟାୟ ୧୮ ଶ୍ଳୋକ ସଂ୪୪ର ବ୍ୟାଖ୍ୟାରୁ ଉଦ୍ଧୃତ ।)

***ଗୋବିନ୍ଦ ଗୋପାଲଜୀ ଜୟ***



# ନିଜ କର୍ମ ଦ୍ୱାରା ଭଗବାନଙ୍କର ପୂଜନ ।

ମନୁ ସ୍ମୃତିରେ ବ୍ରାହ୍ମଣଙ୍କ ପାଇଁ ଛଅଗୋଟି କର୍ମର ନିର୍ଦ୍ଦେଶ କରାଯାଇଛି, ଯଥାଃ-ସ୍ୱୟଂ ପଢ଼ିବା ଏବଂ ଅନ୍ୟଙ୍କୁ ପଢ଼ାଇବା, ସ୍ୱୟଂ ଯଜ୍ଞ କରିବା ଏବଂ ଅନ୍ୟଦ୍ୱାରା ଯଜ୍ଞ କରାଇବା, ନିଜେ ଦାନ ନେବା ଏବଂ ଅନ୍ୟଙ୍କୁ ଦାନ ଦେବା* (ଏଥି ମଧ୍ୟରୁ ପଢାଇବା, ଯଜ୍ଞ କରାଇବା, ଦାନ ନେବା- ଏହି ତିନୋଟି କର୍ମ ତ ଜୀବିକା ପାଇଁ ଏବଂ ପଢ଼ିବା, ଯଜ୍ଞ କରିବା ଓ ଦାନ ଦେବା- ଏ ତିନୋଟି କର୍ମ କର୍ତ୍ତବ୍ୟ ପାଇଁ) । ଉପରୋକ୍ତ ଶାସ୍ତ୍ରନିୟତ ଛଅ କର୍ମ ଏବଂ ଶମ-ଦମ ଆଦି ନଅ ସ୍ୱଭାବଜ କର୍ମ ତଥା ଏହା ବ୍ୟତୀତ ଖାଇବା-ପିଇବା, ଉଠିବା-ବସିବା ଆଦି ଯେତେ ବି କର୍ମ ଅଛି, ସେହି କର୍ମ ଦ୍ୱାରା ବ୍ରାହ୍ମଣ ମାନେ ଚାରି ବର୍ଣ୍ଣରେ ବ୍ୟାପ୍ତ ପରମାତ୍ମାଙ୍କର ପୂଜନ କରନ୍ତୁ । ତାତ୍ପର୍ଯ୍ୟ ଏହିକି, ପରମାତ୍ମାଙ୍କ ଆଜ୍ଞାରେ, ତାହାଙ୍କର ପ୍ରସନ୍ନତା ପାଇଁ ହିଁ ଭଗବଦ୍ ବୁଦ୍ଧିରେ ନିଷ୍କାମ ଭାବ ପୂର୍ବକ ସମସ୍ତଙ୍କର ସେବା କରିବା ଆବଶ୍ୟକ ।

ଏହିଭଳି କ୍ଷତ୍ରିୟ ମାନଙ୍କ ପାଇଁ ପାଞ୍ଚଟି କର୍ମର ନିର୍ଦ୍ଦେଶ ଦିଆଯାଇଛି- ପ୍ରଜାଙ୍କୁ ରକ୍ଷା କରିବା, ଦାନ ଦେବା, ଯଜ୍ଞ କରିବା, ଅଧ୍ୟୟନ କରିବା ଏବଂ ବିଷୟରେ ଆସକ୍ତ ନହେବା + ଏହି ପାଞ୍ଚଗୋଟି କର୍ମ ତଥା ଶୌର୍ଯ୍ୟ, ତେଜ ଆଦି ସାତଗୋଟି ସ୍ୱଭାବଜ କର୍ମ ଦ୍ୱାରା ଏବଂ ଖାଇବା-ପିଇବା ଆଦି ପ୍ରତ୍ୟେକ କର୍ମ ଦ୍ୱାରା କ୍ଷତ୍ରିୟ ସର୍ବତ୍ର ବ୍ୟାପକ ପରମାତ୍ମାଙ୍କର ପୂଜନ କରିପାରିବ ।

ବୈଶ୍ୟ ଯଜ୍ଞ କରିବା, ଅଧ୍ୟୟନ କରିବା, ଦାନ ଦେବା, ସୁଧ ନେବା, ତଥା କୃଷି, ଗୋରକ୍ଷା, ବାଣିଜ୍ୟ $ ଏହି ଶାସ୍ତ୍ର ନିୟତ ଏବଂ ସ୍ୱଭାବଜ କର୍ମ ଦ୍ୱାରା ଏବଂ ଶୂଦ୍ର ଶାସ୍ତ୍ର ବିହିତ ତଥା ସ୍ୱଭାବଜ କର୍ମରେ ସେବା # ଦ୍ୱାରା

---

*ଅଧ୍ୟାପନମଧ୍ୟୟନଂ ଯଜନଂ ଯାଜନଂ ତଥା ।
ଦାନଂ ପ୍ରତିଗ୍ରହଂ ଚୈବ ବ୍ରାହ୍ମଣାନାମକଳ୍ପୟତ୍ । ।(ମନୁ-୧ ।୮୮)

+ପ୍ରଜାନାଂ ରକ୍ଷଣଂ ଦାନମିଜ୍ୟାଧ୍ୟୟନମେବଚ ।
ବିଷୟେଷ୍ୱପ୍ରସକ୍ତିଶ୍ଚ କ୍ଷତ୍ରିୟସ୍ୟ ସମାସତଃ । ।(ମନୁ-୧ ।୮୯)

$ପଶୂନାଂ ରକ୍ଷଣଂ ଦାନମିଜ୍ୟାଧ୍ୟୟନମେବଚ ।
ବଣିକ୍ପଥଂ କୁସୀଦଂ ଚ ବୈଶ୍ୟସ୍ୟ କୃଷିମେବଚ । ।(ମନୁ-୧ ।୯୦)

#ଏକମେବ ତୁ ଶୂଦ୍ରସ୍ୟ ପ୍ରଭୁଃ କର୍ମ ସମାଦିଶତ୍ ।
ଏତେଷାମେବ ବର୍ଣ୍ଣାନାଂ ଶୁଶ୍ରୂଷାମନସୂୟୟା । ।(ମନୁ-୧ ।୯୧)

ସର୍ବତ୍ର ବ୍ୟାପକ ପରମାତ୍ମାଙ୍କର ପୂଜନ କରିବା ଉଚିତ୍ ଅର୍ଥାତ୍ ନିଜର ଶାସ୍ତ୍ର ବିହିତ, ସ୍ୱଭାବଜ ଏବଂ ଖାଦ୍ୟ-ପେୟ, ନିଦ୍ରା-ଜାଗ୍ରତ ଆଦି ସମସ୍ତ କର୍ମଦ୍ୱାରା ଭଗବାନଙ୍କର ଆଜ୍ଞାମାନି ତାଙ୍କ ପ୍ରସନ୍ନତା ପାଇଁ ଭଗବଦ୍ ବୁଦ୍ଧିରେ ନିଷ୍କାମ ଭାବ ପୂର୍ବକ ସମସ୍ତଙ୍କର ସେବା କରିବା ଉଚିତ୍ ।

ଶାସ୍ତ୍ରରେ ମନୁଷ୍ୟ ପାଇଁ ନିଜର ବର୍ଣ୍ଣ ଏବଂ ଆଶ୍ରମ ଅନୁସାରେ ଯେଉଁ-ଯେଉଁ କର୍ତ୍ତବ୍ୟ-କର୍ମ କୁହାଯାଇଛି, ସେ ସବୁ ସଂସାର ରୂପକ ପରମାତ୍ମାଙ୍କର ପୂଜାପାଇଁ ହିଁ କୁହାଯାଇଛି । ଯଦି ସାଧକ ନିଜର କର୍ମଦ୍ୱାରା ଭାବ ଭକ୍ତି ସହିତ ସେହି ପରମାତ୍ମାଙ୍କର ପୂଜନ କରେ, ତେବେ ତାହାର ପ୍ରତ୍ୟେକ କ୍ରିୟା ପରମାତ୍ମାଙ୍କର ପୂଜନ ହୋଇଯିବ । ଉଦାହରଣ ସ୍ୱରୂପଃ- ଯେପରି ପିତାମହ ଭୀଷ୍ମ(ଅର୍ଜୁନ ସହିତ ଯୁଦ୍ଧ କରୁଥିବା ସମୟରେ) ଅର୍ଜୁନର ସାରଥି ହୋଇଥିବା ଭଗବାନଙ୍କୁ ନିଜର ଯୁଦ୍ଧ ରୂପକ କର୍ମଦ୍ୱାରା (ବାଣରେ) ପୂଜାକଲେ । ଭୀଷ୍ମଙ୍କ ବାଣରେ ଭଗବାନଙ୍କ କବଚ ଛିଣ୍ଡିଗଲା, ଯଦ୍ଦ୍ୱାରା ତଙ୍କ ଶରୀର କ୍ଷତ-ବିକ୍ଷତ ହୋଇଗଲା ଏବଂ ହାତର ଅଙ୍ଗୁଳି ମାନଙ୍କରେ ଛୋଟ-ଛୋଟ ବାଣ ଲାଗିବା ଦ୍ୱାରା ଲଗାମ ଧରିବା କଠିନ ହୋଇଗଲା । ଏହିଭଳି ପୂଜାକରି ଅନ୍ତ ସମୟରେ ଶରଶଯ୍ୟା ଉପରେ ଶୋଇଥିବା ଅବସ୍ଥାରେ ପିତାମହ ଭୀଷ୍ମ ନିଜର ବାଣଦ୍ୱରା ପୂଜା କରିଥିବା ଭଗବାନଙ୍କୁ ଧ୍ୟାନ କରୁଥିଲେ 'ଯୁଦ୍ଧରେ ମୋର ତୀକ୍ଷ୍ଣ ବାଣଦ୍ୱାରା ଯାହାଙ୍କର କବଚ ଛିଣ୍ଡି ଯାଇଛି, ଯାହାଙ୍କ ତ୍ୱଚା ବିଚ୍ଛିନ୍ନ ହୋଇଯାଇଛି, ପରିଶ୍ରମ କାରଣରୁ ଯାହାଙ୍କମୁଖ ମଣ୍ଡଳରେ ବିନ୍ଦୁ-ବିନ୍ଦୁ ଝାଳ ଶୋଭା ପାଉଛି, ଘୋଡ଼ାଙ୍କ ଖୁରାରୁ ଉଡ଼ିଥିବା ରଜ (ଧୂଳିକଣା) ଯାହାଙ୍କ ସୁନ୍ଦର ଅଳକା ବଳିରେ ଲାଗିଛି, ଏହିଭଳି ବାଣରେ ଅଳଂକୃତ ଭଗବାନ ଶ୍ରୀକୃଷ୍ଣଙ୍କ ଠାରେ ମୋର ମନ ବୁଦ୍ଧି ଲାଗିଯାଉ ।'*

ଲୌକିକ ଏବଂ ପାରମାର୍ଥିକ କର୍ମ ଦ୍ୱାରା ସେହି ପରମାତ୍ମାଙ୍କର ପୂଜନ ତ କରିବା ଉଚିତ, କିନ୍ତୁ ସେହି କର୍ମରେ ଏବଂ କର୍ମ କରାଯାଉଥିବା କରାଯାଉଥିବା କରଣ-ଉପକରଣ(ମନ, ବୁଦ୍ଧି, ଇନ୍ଦ୍ରିୟ ଆଦି)ରେ ମମତା ରଖିବା ଉଚିତ ନୁହେଁ । କାରଣ ଏହିକି, ଯେଉଁ ବସ୍ତୁ ଏବଂ କ୍ରିୟା ମାନଙ୍କରେ

*ଯୁଧି ତୁରଗରଜୋବିଧୂମ୍ରବିଷ୍ୱକ୍କଚ ଲୁଳିତ ଶ୍ରମବାର୍ଯ୍ୟଳଙ୍କୃତାସ୍ୟେ ।
ମମ ନିଶିତଶରୈର୍ବିଭିଦ୍ୟମାନତ୍ୱଚି ବିଳସକ୍କବଚେଽସ୍ତୁ କୃଷ୍ଣ ଆତ୍ମା ।
(ଶ୍ରୀମଭା·୧ ।୯ ।୩୪)

ମମତା ହୋଇଯାଏ, ସେ ସବୁ ଜିନିଷ ଅପବିତ୍ର ହୋଇଯିବା ଦ୍ୱାରା* ତାହା ପୂଜା ସାମଗ୍ରୀ ହୋଇ ରହେନାହିଁ (ଅପବିତ୍ର ଫୁଲ, ଫଳ, ଆଦି ଭଗବାନଙ୍କ ଉପରେ ଚଢ଼େ ନାହିଁ) । ଏଣୁ ମୋ ପାଖରେ ଯାହାକିଛି ଅଛି, ତାହାସବୁ ସେହି ସର୍ବବ୍ୟାପକ ପରମାତ୍ମାଙ୍କର ହିଁ ଅଟେ । ମୋତେ ତ କେବଳ ନିମିତ୍ତ ମାତ୍ର ହୋଇ ଦେଇଥିବା ଶକ୍ତି ଦ୍ୱାରା ତାଙ୍କର ପୂଜା କରିବା ବିଧେୟ,-ଏହି ଭାବରେ ଯାହାକିଛି କରାଯାଏ, ସେ ସବୁ ପରମାତ୍ମାଙ୍କ ପୂଜା ହୋଇଯାଏ । ଅପର ପକ୍ଷେ ସେହି କ୍ରିୟାକୁ (ବସ୍ତୁ ଆଦିକୁ) ମନୁଷ୍ୟ ଯେତିକି ନିଜର ମାନେ, ସେତିକି ହିଁ ସେହି (ନିଜର ମାନିନେଇ ଥିବା) କ୍ରିୟା ଓ ବସ୍ତୁ ଗୁଡ଼ିକ (ଅପବିତ୍ର ହେବାଦ୍ୱାରା) ପରମାତ୍ମାଙ୍କର ପୂଜନରୁ ବଞ୍ଚିତ ହୋଇ ରହିଯାଏ । ଅର୍ଥାତ୍ ପରମାତ୍ମଙ୍କ ପୂଜାପାଇଁ ସେ ସବୁ ପଦାର୍ଥ ଓ କ୍ରିୟା କାମରେ ଆସିନାହିଁ(ଗୀତା ।୧୮ ।୪୬ ଶ୍ଳୋକର ବ୍ୟାଖ୍ୟାରୁ ଉଦ୍ଧୃତ) ।

ନାରାୟଣ! ନାରାୟଣ!! ନାରାୟଣ!!!



---

*'ମମତା ମଳ ଜରି ଜାଇ' (ରାମ. ମାନସ ୭ ।୧୧୭)

# ସମତା କେମିତି ରଖିବା ?

ଆଜିକାଲି ସମତା ଉପରେ ବିଶେଷ ଚର୍ଚ୍ଚା ଚାଲିଛି । ସମସ୍ତଙ୍କ ସହିତ ସମାନ ବ୍ୟବହାର କର-ଏହିପରି ପ୍ରଚାର କରାଯାଉଛି । କିନ୍ତୁ ବାସ୍ତବରେ ସମତା କାହାକୁ କୁହାଯାଏ ଏବଂ ତାହା କେବେ ଆସେ - ଏହାକୁ ବୁଝିବା ଅତ୍ୟାବଶ୍ୟକ ଅଟେ ।

ସମତା କୌଣସି ଖେଳ-ତମାସା ନୁହେଁ, ବରଂ ପରମାତ୍ମାଙ୍କର ସାକ୍ଷାତ ସ୍ୱରୂପ ଅଟେ । ଯାହାର ମନ ସମତାରେ ସ୍ଥିତ ହୋଇଯାଏ, ସେ ଏଠାରେ ଜୀବିତ ଅବସ୍ଥାରେ ହିଁ ସଂସାର ଉପରେ ବିଜୟ ପ୍ରାପ୍ତ କରିନିଏ ଏବଂ ପରଂବ୍ରହ୍ମ ପରମାତ୍ମାଙ୍କୁ ଅନୁଭବ କରିନିଏ* । ସମତା ସେତେବେଳେ ଆସେ, ଯେତେବେଳେ ମନୁଷ୍ୟ ଅନ୍ୟର ଦୁଃଖରେ ଦୁଃଖି ଏବଂ ଅନ୍ୟର ସୁଖରେ ସୁଖି ବୋଲି ନିଜକୁ ଭାବିନିଏ । ଗୀତାରେ ଭଗବାନ କହିଛନ୍ତି-

**ଆତ୍ମୌପମ୍ୟେନ ସର୍ବତ୍ର ସମଂ ପଶ୍ୟତି ଯୋଽର୍ଜୁନ ।**
**ସୁଖଂ ବା ଯଦି ବା ଦୁଃଖଂ ସ ଯୋଗୀ ପରମୋ ମତଃ ।।**

(ଗୀତା ।୬ ।୩୨)

'ହେ ଅର୍ଜୁନ ! ଯେଉଁ ପୁରୁଷ ନିଜର ଶରୀର ତୁଳନାରେ ପ୍ରତ୍ୟେକ ସ୍ଥାନରେ ନିଜକୁ ସମାନ ଦେଖେ ଏବଂ ସୁଖ ଅଥବା ଦୁଃଖକୁ ମଧ୍ୟ ସର୍ବତ୍ର ସମାନ ଦେଖେ, ସେହି ଯୋଗୀ ପରମ ଶ୍ରେଷ୍ଠ ଅଟେ ।'

ଯେପରି ଶରୀରର କୌଣସି ଅଙ୍ଗରେ ପୀଡ଼ା ହେଲେ ତାକୁ ଦୂର କରିବା ପାଇଁ ବିଶେଷ ମନଯୋଗ ପୂର୍ବକ ଚେଷ୍ଟା କରାଯାଏ, ଠିକ୍ ସେହିଭଳି କୌଣସି ପ୍ରାଣୀକୁ ଦୁଃଖ, ସନ୍ତାପ (କଷ୍ଟ) ଆଦି ହେଲେ ତାକୁ ଦୂର କରିବା ପାଇଁ ଯଦି ଶ୍ରଦ୍ଧା ଉପୁଜେ, ତେବେ ଯାଇ ସମତା ଆସେ । ସନ୍ଥମାନଙ୍କର ଲକ୍ଷଣରେ ମଧ୍ୟ ଆସିଛିକି-

**'ପର ଦୁଖ ସୁଖ ସୁଖ ଦେଖେ ପର'** । ।(ରାମ-ମାନସ ।୭ ।୩୮ ।୧)

ଯେ ପର୍ଯ୍ୟନ୍ତ ନିଜପାଇଁ ସୁଖଭୋଗର ଲାଳସା ଅଛି, ସେ ପର୍ଯ୍ୟନ୍ତ

---

***ଇହୈବ ତୈର୍ଜିତଃ ସର୍ଗୋ ଯେଷାଂ ସାମ୍ୟେ ସ୍ଥିତଂ ମନଃ ।**
**ନିର୍ଦୋଷଂ ହି ସମଂ ବ୍ରହ୍ମ ତସ୍ମାଦ୍ ବ୍ରହ୍ମଣି ତେ ସ୍ଥିତାଃ ।।**

**(ଗୀତା୫ ।୧୯)**

ଯେତେଚେଷ୍ଟା କରାଯାଉନା କାହିଁକି ସମତା ଆସିବ ନାହିଁ । କିନ୍ତୁ ହୃଦୟରେ ଯେତେବେଳେ ଏହି ଉତ୍କଣ୍ଠା ଲାଗିଯିବ, କି ଅନ୍ୟମାନେ ସୁଖ କେମିତି ପାଇବେ? ତାଙ୍କୁ ଆରାମ କେମିତି ହେବ ? ତାଙ୍କର ଲାଭ କେମିତି ହେବ ? ତାଙ୍କର କଲ୍ୟାଣ କେମିତି ହେବ ? ତେବେ ସେତେବେଳେ ସମତା ଆପେ-ଆପେ ଆସିଯିବ । ଏହାର ଆରମ୍ଭ ସର୍ବ ପ୍ରଥମେ ନିଜ ଘରେ କରିବା ଦରକାର । ହୃଦୟରେ ଏହି ଭାବ ଉପୁଜାଅ, କି ପରିବାରରେ କାହାକୁ ତିଳେମାତ୍ର ଦୁଃଖ ବା କଷ୍ଟ ନ ହେଉ, କାହାର କେବେ ଅନିଷ୍ଟ ନ ହେଉ । ଯେତେ କଷ୍ଟ ଆସୁ ପଛେ ମୁଁ ସହିନେବି, କିନ୍ତୁ ମୋର ବାପା-ମା, ସ୍ତ୍ରୀ-ପୁତ୍ର, ଭାଇ-ଭାଉଜ ଆଦିଙ୍କୁ ସୁଖ ଯେମିତି ଦେଇ ପାରିବି । ଘରର ପରିବାର ବର୍ଗଙ୍କୁ ସୁଖ ଦେଇ ପାରିଲେ ହୃଦୟରେ ସ୍ୱତଃ ଶାନ୍ତିର ଅନୁଭବ ହେବ । ଯେଉଁଠି ନିଜ ଘର ସହିତ କୌଣି ସମ୍ବନ୍ଧ ନାହିଁ , ଯଦି ସେଠାରେ ନିଜେ କଷ୍ଟ ସହି ଅନ୍ୟମାନଙ୍କୁ ଶାନ୍ତି ଦିଆଯାଇପାରେ ତେବେ ବିଶେଷ ଆନନ୍ଦର ଲହରୀ ହୃଦୟରେ ଜାଗିଉଠିବ! କିନ୍ତୁ ମମତା ପୂର୍ବକ ସୁଖ ପହଞ୍ଚାଇଲେ ସେଥିରେ ଆମର ଉନ୍ନତି ହେବନାହିଁ । ଯେଉଁଠାରେ ଆମର ମମତା ନାହିଁ, ସେଠାରୁ ନିଜର ମମତା ଦୂର କରିଦିଆଯାଉ କିମ୍ବା ଯେଉଁଠି ମମତା ନାହିଁ ସେଠାରେ ସେବା କରାଯାଉ- ଏହି ଦୁଇଟିର ଫଳାଫଳ ଏକ ହିଁ ହେବ ।

ଚିତ୍ରକୁଟରେ ଲକ୍ଷ୍ମଣ ଭଗବାନ୍ ରାମଚନ୍ଦ୍ର ଏବଂ ସୀତାଙ୍କର ସେବା କେମିତି କରୁଥିଲେ, ଏହାକୁ ଲକ୍ଷ୍ୟକରି ଗୋସ୍ୱାମୀ ତୁଳସୀ ଦାସ କହିଛନ୍ତି-

**ସେବହିଁ ଲଖନୁ ସୀୟ ରଘୁବୀରହି । ଜିମି ଅବିବେକ ପୁରୁଷ ଶରୀରହି ।**

(ରାମ· ମାନସ ୨ ।୧୪୨ ।୧)

ଅର୍ଥାତ୍ ଲକ୍ଷ୍ମଣ ଭଗବାନ ରାମ ଏବଂ ମାତା ସୀତାଙ୍କର ସେବା ସେହିଭଳି କରୁଥିଲେ, ଯେପରି ଅଜ୍ଞାନୀ ମନୁଷ୍ୟ ନିଜ ଶରୀରର ସେବା କରେ । ନିଜ ଶରୀରର ସେବାକରିବା, ଏବଂ ତାକୁ ସୁଖରେ ରଖିବା; ଏହା ବୁଦ୍ଧିମାନୀ ନୁହେଁ । ନିଜ ଶରୀରର ସେବା ତ ପଶୁ ମଧ୍ୟ କରିଥାଏ । ଯଥା ମାଙ୍କଡ଼ ନିଜର ଛୁଆ ଉପରେ ଏତେ ମମତା ରଖିଥାଏ ଯେ ଛୁଆ ମରିଯିବାପରେ ମଧ୍ୟ ସେ ତାକୁ ତଳେ ପକାଏ ନାହିଁ । ପରନ୍ତୁ ଯଦି କୌଣସି ଖାଇବା ଜିନିଷ ମିଳିଗଲା, ତେବେ ଛୁଆକୁ ନ ଦେଇ ସେ ନିଜେ ତାହା ଖାଇଦିଏ । ଯଦି ଛୁଆ ଖାଇବାପାଇଁ ଚେଷ୍ଟାକଲା, ତେବେ ତାକୁ ଏମିତି

ଖେଁକେରା ମାରେ ଯେ ସେ ଚେଁ-ଚେଁ ହୋଇ ପଳାଏ । ଅତଏବ ମମତା ଥାଇ ସମତା ଆସିବା ଅସମ୍ଭବ ଅଟେ ।

ଯାହାଠାରୁ ଆମର କିଛି ପାଇବାର ନାହିଁ, ଯାହାଠାରେ ଆମର କିଛି ସ୍ୱାର୍ଥ ନାହିଁ । ସେହିଭଳି ବ୍ୟକ୍ତିଙ୍କ ସହିତ ଆମେ ପ୍ରେମ ପୂର୍ବକ ତାଙ୍କର ହିତ ଉଦ୍ଦେଶ୍ୟରେ ଖୁବ୍ ଭଲ ବ୍ୟବହାର କରିବା ଉଚିତ୍ । ଯଥା- କୌଣସି ବ୍ୟକ୍ତି ମାର୍ଗ ଭୁଲି ଯାଇଛନ୍ତି, ତାଙ୍କୁ ରାସ୍ତା ଜଣା ନାହିଁ, ତେଣୁ ସେ ଆମକୁ ବାଟ ପଚାରୁଛନ୍ତି । ଏଠାରେ ଆମର କର୍ତ୍ତବ୍ୟ ହେଲା ଆମେ ପ୍ରସନ୍ନତା ପୂର୍ବକ ତାଙ୍କୁ ବାଟ ଦେଖାଇ ଦେବା, ଏବଂ କିଛି ଦୂର ପର୍ଯ୍ୟନ୍ତ ତାଙ୍କ ସାଙ୍ଗରେ ଚାଲିଯିବା । ଏହାଦ୍ୱାରା ଆମ ହୃଦୟରେ ପ୍ରତ୍ୟକ୍ଷ ସୁଖର ବା ଶାନ୍ତିର ଅନୁଭବ ହେବ । ପରନ୍ତୁ ଯଦି ଆମେ ରାସ୍ତା ଜାଣି ମଧ୍ୟ ତାଙ୍କୁ ନ କହିବା, ତେବେ ଆମ ହୃଦୟରେ ଶାନ୍ତିର ଅନୁଭବ ହେବ ନାହିଁ । ଏହା ପ୍ରତ୍ୟକ୍ଷ ଅନୁଭବର କଥା । ଆପଣ ପରିକ୍ଷାକରି ଦେଖିପାରନ୍ତି ମଧ୍ୟ । ସେହିପରି ମନେକର କାହାକୁ ଶୋଷ ଲାଗୁଥାଏ, ତେବେ ତାଙ୍କୁ କହିଦିଅ କି ଭାଇ ଏଠାକୁ ଆସ ,ଏଠାରେ ଥଣ୍ଡା ଜଳ ଅଛି । ତାପରେ ଦେଖ ନିଜ ହୃଦୟରେ ପ୍ରସନ୍ନତା ଏବଂ ସୁଖ ଆସୁଛି କି ନାହିଁ । ଏହିସୁଖ ଆମର କଲ୍ୟାଣ କରିବାରେ ଲାଗେ । ଅନ୍ୟମାନେ ପଛେ ଦୁଃଖ ପାଆନ୍ତୁ, କିନ୍ତୁ ମୁଁ ସୁଖ ନେଇଯିବି -ଏହି ସୁଖ ପତନ କରିଦିଏ ! ଏହାଦ୍ୱାରା ନାଁ ତ ବ୍ୟବହାରରେ ଉନ୍ନତ ହୁଏ ନାଁ ପରାମାର୍ଥିକ ମାର୍ଗରେ । ଆମେ ସତ୍ସଙ୍ଗର ଆୟୋଜନ କରୁଛେ ! ସତ୍ସଙ୍ଗ ଶୁଣିବାପାଇଁ ଆସିଥିବା ବ୍ୟକ୍ତି ମାନଙ୍କୁ ଯଦି ଆମେ କହିବା, କି ଆଜ୍ଞା ଆସନ୍ତୁ ଏଠାରେ ବସନ୍ତୁ , ଏବଂ ସେମାନଙ୍କୁ ଏଭଳି ଜାଗାରେ ବସାଇବା ଉଚିତ୍ ଯେପରି ସତ୍ସଙ୍ଗର କଥା ସେ ଭଲ ଭାବରେ ଶୁଣି ପାରିବେ ଏବଂ ଆରାମରେ ବସି ପାରିବେ । ଏହିଭଳି ଭାବ ରଖି ସେମାନଙ୍କ ସହିତ ବ୍ୟବହାର କରିବା ଦ୍ୱାରା, ହୃଦୟରେ ପ୍ରତ୍ୟକ୍ଷ ଶାନ୍ତିର ଅନୁଭବ ହେବ । କିନ୍ତୁ ସେଠାରେ ଆମେ ଯଦି ହୁକୁମ ଦେବା କି ସିଆଡ଼େ କାହିଁକି ବସିଛ ? ଏଠିକି ଆସ, ସେଠାରେ ବସ । ତେବେ କଥା ଏକାଭଳି ହୋଇଥିଲେ ମଧ୍ୟ ହୃଦୟରେ ଶାନ୍ତିର ଅନୁଭବ ହେବନାହିଁ । ଭିତରେ ଯେଉଁ ଅଭିମାନ ଅଛି, ତାହା ଅନ୍ୟକୁ ଖରାପ ଲାଗେ । ଆମେ ତ ବ୍ୟବହାର କରୁଥିବା ଅଭିମାନର ମଦରେ ମଦାନ୍ଧ ହୋଇ ଏବଂ ଭାବିବା କି ସମତା ଆସିଯାଉ, ତାହା କେବେହେଲେ ଆସିବ ନାହିଁ ।

ସମସ୍ତଙ୍କ ହିତରେ ଯାହାର ପ୍ରୀତି ହୋଇଯାଇଛି, ସେ ଭଗବାନଙ୍କୁ ଅବଶ୍ୟ ପ୍ରାପ୍ତ ହୁଅନ୍ତି **'ତେ ପ୍ରାପ୍ନୁବନ୍ତି ମାମେବ ସର୍ବଭୂତହିତେ ରତାଃ'** (ଗୀତା ।୧୨ ।୪) । କାରଣ, ଭଗବାନ ପ୍ରାଣୀଙ୍କର ପରମ ସୁହୃଦ୍ ଅଟନ୍ତି (ଗୀତା ।୫ ।୨୯) । ସେ ଚରାଚର ସମସ୍ତ ପ୍ରାଣୀଙ୍କର ପାଳନ-ପୋଷଣ କରୁଛନ୍ତି । ଆସ୍ତିକରୁ- ଆସ୍ତିକ ହେଇଥାଉ ବା ନାସ୍ତିକରୁ- ନାସ୍ତିକ, ଉଭୟଙ୍କ ପାଇଁ ଭଗବାନଙ୍କର ବିଧାନ ବରାବର(ସମାନ) ଅଟେ । ଜଣେ ବ୍ୟକ୍ତି ପୂର୍ଣ୍ଣ ଆସ୍ତିକ ଅଟନ୍ତି, ଭଗବାନଙ୍କୁ ବହୁତ ମାନନ୍ତି ଏବଂ ତାଙ୍କୁ ପାଇବା ପାଇଁ ସାଧନ ଭଜନ କରୁଛନ୍ତି, ଅପରପକ୍ଷେ ଜଣେ ବ୍ୟକ୍ତି ଏଭଳି ନାସ୍ତିକ ଯେ, ସେ ସଂସାରରୁ ଭଗବାନଙ୍କ ଖାତା(ନାମ ନିଶାଣ) ଉଠାଇ ଦେବାକୁ ଚାହୁଁଛି । ଭଗବାନଙ୍କୁ ମାନିବା ଦ୍ୱାରା ଏବଂ ଭଗବାନଙ୍କ କାରଣରୁ ହିଁ ଦୁନିଆଁ ଦୁଃଖ ଭୋଗ କରୁଛି, ଭଗବାନ ନାମରେ କେହିହେଲେ ନାହିଁ- ଏହା ତାର ହୃଦୟର ଭାବ ଅଟେ । ଏବଂ ଏହିଭଳି ସେ ପ୍ରଚାର ମଧ୍ୟ କରୁଛି । ଏପରି ନାସ୍ତିକରୁ-ନାସ୍ତିକ ବ୍ୟକ୍ତିକୁ ପାଣି ପିଇବା ଦ୍ୱାରା ତାର ଯେତିକି ପରିମାଣରେ ଶୋଷ ମେଣ୍ଟିଥାଏ, ସେହିଭଳି ଆସ୍ତିକରୁ-ଆସ୍ତିକ ବ୍ୟକ୍ତିର ଶୋଷକୁ ମଧ୍ୟ ପାଣି ସେତିକି ପରି ମାଣରେ ମେଣ୍ଟାଇ ଥାଏ । ସେହିଭଳି ଆସ୍ତିକରୁ-ଆସ୍ତିକ ବ୍ୟକ୍ତିର ଶୋଷକୁ ମଧ୍ୟ ପାଣି ସେତିକି ପରି ମାଣରେ ମେଣ୍ଟାଇ ଥାଏ । ଜଳରେ ଏପରି ଭେଦ ନାହିଁ, କି ଏ ଆସ୍ତିକ ବ୍ୟକ୍ତି ତେଣୁ ମୁଁ ଏହାର ତୃଷ୍ଣା ମେଣ୍ଟାଇବି ଏବଂ ଏ ନାସ୍ତିକ ବ୍ୟକ୍ତି ତେଣୁ ଏହାର ତୃଷ୍ଣା ମୁଁ ମେଣ୍ଟାଇବି ନାହିଁ, ସେ ତ ସମାନ ଭାବେ ତୃଷ୍ଣା ମେଣ୍ଟାଏ । ସେହିଭଳି ସୂର୍ଯ୍ୟ, ବାୟୁ, ପୃଥିବୀ ଆଦି ଭଗବାନଙ୍କ ଦ୍ୱାରା ରଚିତ ପ୍ରତ୍ୟେକ ବସ୍ତୁ ସମାନ ଭାବରେ ସମସ୍ତଙ୍କୁ ମିଳୁଛି ।

ସମତାର ଅର୍ଥ ଏହା ନୁହେଁ, କି ସମାନ ରୀତିରେ ସମସ୍ତଙ୍କ ସହିତ (ଭୋଜନ-ବିବାହ) ବ୍ୟବହାର କରିବା । ବ୍ୟବହାରରେ ତ ସମତା ମହାନ୍ ପତନକାରୀ ଅଟେ । ସମାନ ବ୍ୟବହାର ତ ଯମ ରାଜାଙ୍କର, ବା ମୃତ୍ୟୁର ନାମ ଅଟେ, କାହିଁକିନା ତାଙ୍କର ବ୍ୟବହାରରେ ବିଷମତା କଦାପି ହୁଏ ନାହିଁ ମହାତ୍ମାହେଉ, ଗୃହସ୍ଥ ହେଉ, ସାଧୁ ହେଉ, ପଶୁ ହେଉ, ଦେବତା ଇତ୍ୟାଦି ଯିଏ ହେଉନା କାହିଁକି ମୃତ୍ୟୁ ସମସ୍ତଙ୍କର ଅନିର୍ବାଯ୍ୟ । ଏଥିପାଇଁ ଯମରାଜଙ୍କୁ

**'ସମବର୍ତ୍ତୀ'**(ସମାନ ବ୍ୟବହାର କରିବାବାଲା) କୁହାଯାଇଛି*। ଅତଏବ ଯେଉଁମାନେ ସମବ୍ୟବହାର କରୁଛନ୍ତି, ସେମାନେ ମଧ୍ୟ କାଳ ବା ଜମରାଜ ଅଟନ୍ତି ।

ପଶୁ ମାନଙ୍କ ଠାରେ ମଧ୍ୟ ସମାନ ବ୍ୟବହାର ଦେଖିବାକୁ ମିଳେ । ଯଥା:- କୁକୁର ବ୍ରାହ୍ମଣର ହାଣ୍ଡିଶାଳରେ ପଶିଲେ ଗୋଡ଼ ଧୋଇ ଯାଏନାହିଁ । ବ୍ରାହ୍ମଣର ରୋଷେଇଘର ହୋଇଥାଉ ବା ହରିଜନର, ସିଏତ ଯେମିତିକି ସେମିତି ପଶି ଯାଏ, କାହିଁକିନା ତାହା ତାର ସମତା । କିନ୍ତୁ ମନୁଷ୍ୟ ପାଇଁ ଏଭଳି ସମତା ଠିକ୍ ନୁହେଁ, ବରଂ ଏହା ମହାନ୍ କ୍ଷତି କାରକ ଅଟେ । ସମତାର ଅର୍ଥ ଏହାକି ଅନ୍ୟର ଦୁଃଖ କେମିତି ଦୂର ହେଉ, ଅନ୍ୟକୁ କେମିତି ସୁଖ ହେଉ ଆରାମ ହେଉ ଇତ୍ୟାଦି । ଏହିଭଳି ସମତା ରକ୍ଷାକରି ବ୍ୟବହାରରେ ପବିତ୍ରତା ଓ ନିର୍ମଳତା ରକ୍ଷାକରିବା ଉଚିତ୍ । ବ୍ୟବହାରରେ ପବିତ୍ରତା ରଖିବା ଦ୍ୱାରା ଅନ୍ତଃକରଣ ନିର୍ମଳ, ଏବଂ ପବିତ୍ର ହୁଏ । କିନ୍ତୁ ବ୍ୟବହାରରେ ଅପବିତ୍ରତା ରଖିବା ଦ୍ୱାରା, ଖାଦ୍ୟ-ପେୟ ଆଦି ଏକାସାଙ୍ଗରେ କରିବାଦ୍ୱାରା ଅନ୍ତଃ କରଣରେ ଅପବିତ୍ରତା ଆସେ, ଯଦ୍ଦ୍ୱାରା ଅଶାନ୍ତି ବଢ଼େ । କେବଳ ବାହାରର ବ୍ୟବହାର ସମାନ ରଖିବା ଶାସ୍ତ୍ର ଓ ସମାଜର ମର୍ଯ୍ୟାଦାର ବିରୁଦ୍ଧ ଅଟେ । ଏହାଦ୍ୱାରା ସମାଜରେ ସଂଘର୍ଷ ସୃଷ୍ଟି ହୁଏ ।

ବର୍ଣ୍ଣରେ ବ୍ରାହ୍ମଣ ଉଚ୍ଚ ଏବଂ ଶୂଦ୍ର ନୀଚ- ଏହା ଶାସ୍ତ୍ରର ସିଦ୍ଧାନ୍ତ ନୁହେଁ । ବ୍ରାହ୍ମଣ ଉପଦେଶ ଦ୍ୱାରା, କ୍ଷତ୍ରିୟ ରକ୍ଷା ଦ୍ୱାରା, ବୈଶ୍ୟ ଧନ-ସମ୍ପତ୍ତି, ଆବଶ୍ୟକ ବସ୍ତୁ ଦ୍ୱାରା ଏବଂ ଶୂଦ୍ର ଶରୀର ଦ୍ୱାରା ପରିଶ୍ରମ କରି ଚାରି ବର୍ଣ୍ଣର ସେବା କରନ୍ତୁ । ଏହାର ଅର୍ଥ ନୁହେଁ କି କର୍ତ୍ତବ୍ୟ ପାଳନରେ ଜଣେ ପରିଶ୍ରମ କରୁ ଅନ୍ୟ ଜଣେ ନ କରୁ, ବରଂ ନିଜର କର୍ତ୍ତବ୍ୟ ପାଳନରେ ସମାନ ରୀତିରେ ସମସ୍ତେ ପରିଶ୍ରମ କରିବା ଦରକାର । ଯାହାଙ୍କ ପାଖରେ ଯେଉଁଭଳି ଶକ୍ତି, ବିଦ୍ୟା, ବସ୍ତୁ, କଳା ଆଦି ଅଛି, ତାହାଦ୍ୱାରା ସେ ଚାରି ବର୍ଣ୍ଣର ସେବା କରନ୍ତୁ, ପରସ୍ପର- ପରସ୍ପରଙ୍କ କାର୍ଯ୍ୟରେ ସହାୟକ ହୁଅନ୍ତୁ । ପରନ୍ତୁ ଚାରି ବର୍ଣ୍ଣର ସେବା କରିବାରେ କେହି ଭେଦ-ଭାବ ନ ରଖନ୍ତୁ ।

ଆଜିକାଲି ବର୍ଣ୍ଣାଶ୍ରମକୁ ତ୍ୟାଗ କରି ପାର୍ଟିଗଠନ ଚାଲିଛି । ବର୍ଣ୍ଣାଶ୍ରମରେ ଆଜିକାଲି ଏତେ ସଂଘର୍ଷ ନାହିଁ, ଯେତିକି ପାର୍ଟି ଗଠନରେ ଚାଲିଛି- ଏହା

*'ସମବର୍ତ୍ତୀ ପରେତରାଟ୍' (ଅମରକୋଷ ୧.୧.୫୮)

ପ୍ରତ୍ୟକ୍ଷ କଥା ଅଟେ । ପୂର୍ବେ ଲୋକମାନେ ଚାରି ବର୍ଣ୍ଣର ଏବଂ ଆଶ୍ରମର ମର୍ଯ୍ୟାଦାରେ ଚାଲୁଥିଲେ ଏବଂ ସୁଖ ଶାନ୍ତି ପୂର୍ବକ ରହୁଥିଲେ । କିନ୍ତୁ ଆଧୁନିକ ଯୁଗରେ ବର୍ଣ୍ଣାଶ୍ରମର ମର୍ଯ୍ୟାଦାକୁ ଦୂରେଇ ଦେଇ ଅନେକ ପାର୍ଟି ତିଆରି ଚାଲିଛି । ଯଦ୍ଵାରା ସଂଘର୍ଷକୁ ପ୍ରୋତ୍ସାହନ ମିଳୁଛି । ଗ୍ରାମରେ ଲୋକଙ୍କୁ ପାଣି ମିଳିବା କଠିନ ହେବା ସ୍ଥଳେ, ଯାହାର ଆଧିକାରରେ ବା ଜମିଉପରେ କୂଅ ଅଛି, ସେ କହୁଛି ତୁ ଅମୁକ ପାର୍ଟିକୁ ଭୋଟ ଦେଉଛୁ, ତେଣୁ ମୋ କୂଅରୁ ପାଣି ନେଇ ପାରିବୁ ନାହିଁ । ମା, ବାପ ଏବଂ ପୁଅ- ତିନିଜଣ ଅଲଗା-ଅଲଗା ପାର୍ଟିକୁ ଭୋଟ ଦେଉଛନ୍ତି ଏବଂ ଘରେ ଲଢେଇ କରୁଛନ୍ତି । ଭିତରେ କ୍ରୋଧ ରଖିବା କେତେବଡ଼ ମହାନ୍ ଅନର୍ଥ ଅଟେ, କି ତୁ ସେ ପାର୍ଟିର ମୁଁ ଏ ପାର୍ଟିର ।

ଯଦି ସମତା ଆଣିବାକୁ ଚାହୁଁଛନ୍ତି; ତେବେ ଅନ୍ୟମାନେ ଯେକୌଣସି ବର୍ଣ୍ଣ, ଆଶ୍ରମ, ଧର୍ମ, ସମ୍ପ୍ରଦାୟ, ମତ ଆଦିର ହୋଇଥାଆନ୍ତୁ ନା କାହିଁକି, ତାଙ୍କୁ ସୁଖ ଦେବା ଉଚିତ୍, ତାଙ୍କର ଦୁଃଖ ଦୂର କରିବା ଉଚିତ ଏବଂ ତାଙ୍କର ବାସ୍ତବିକ୍ ହିତ କରିବା ଉଚିତ୍ । ହଁ ଏଥିରେ ଭେଦଭାବ ଆସିପାରେ କି ତୁମେ ରାମ-ରାମ କହୁଛ, ଆମେ କୃଷ୍ଣ-କୃଷ୍ଣ କହୁଛୁ, ତୁମେ ବୈଷ୍ଣବ, ଆମେ ଶୈବ, ତୁମେ ମୁସଲମାନ, ଆମେ ହିନ୍ଦୁ, ଇତ୍ୟାଦି । କିନ୍ତୁ ଏଥିରେ କୌଣସି ବାଧା ଆସେନି, ବରଂ ବାଧା ସେତେବେଳେ ଆସେ, ଯେତେବେଳେ ଏହି ଭାବନା ରହେ କି ସେମାନେ ଆମପାର୍ଟିର ଲୋକ ନୁହଁନ୍ତି ତେଣୁ ସେ ଦୁଃଖ ପାଆନ୍ତୁ ଆମର କ'ଣଅଛି, କିନ୍ତୁ ଆମ ପାର୍ଟି ଲୋକଙ୍କର ମଙ୍ଗଳ ହେଉ । ଏପରି ଭାବ ମହାନ୍ ପତନକାରୀ ଅଟେ । ଅତଏବ କୌଣସି ବର୍ଣ୍ଣ ଆଦିର ମନୁଷ୍ୟଙ୍କୁ କଷ୍ଟ ଭୋଗୁଥିବାର ଦେଖି ତାଙ୍କ ହିତର ଭାବନା ସମାନ ଦୃଷ୍ଟିରେ ହେବା ଏବଂ ତାଙ୍କୁ ସୁଖ ଭୋଗୁ ଥିବାର ଦେଖି ତାଙ୍କ ପ୍ରତି ପ୍ରସନ୍ନତା ମଧ୍ୟ ସମାନ ରିତିରେ ହେବା ଦରକାର । ମନେକର ଯଦି ବ୍ରାହ୍ମଣ ଏବଂ ହରିଜନଙ୍କ ମଧ୍ୟରେ ସଂଘର୍ଷ ହେଲା, ସେଥିରେ ହରିଜନଙ୍କର ହାର ଏବଂ ବ୍ରାହ୍ମଣଙ୍କର ଜିତାପଟ ହେଲା, ତେବେ ଆମ ମନରେ ପ୍ରସନ୍ନତା ହେବା ବା ବ୍ରାହ୍ମଣଙ୍କର ପରାଜୟ ଏବଂ ହରିଜନଙ୍କର ବିଜୟ ହେବା ଦ୍ଵାରା ଆମ ମନରେ ଦୁଃଖ ହେବା, ଏହା ହିଁ ବିଷମତା । ଯାହାକି ବହୁତ ହାନି କାରକ ଅଟେ । ବ୍ରାହ୍ମଣ ଏବଂ ହରିଜନ-ଉଭୟଙ୍କ ପ୍ରତି ଆମ ମନରେ ସମାନ ରୂପେ ହିତ ଭାବନା ହେବା ଦରକାର । କାହାର ଅହିତ ଆମକୁ ସହ୍ୟ ହେବା କଥା ନୁହେଁ,

ଉଭୟଙ୍କ ଦୁଃଖ ଆମକୁ ସମାନ ରୀତିରେ ଖରାପ ଲାଗିବା କଥା । ଯଦି ବ୍ରାହ୍ମଣ ଦୁଃଖୀ ଅଟେ, ତେବେ ତାକୁ ସୁଖ ଦେବା ଏବଂ ଯଦି ହରିଜନ ଦୁଃଖୀ ଅଟେ, ତେବେ ତାକୁ ସୁଖ ନ ଦେବା- ଏଭଳି ପକ୍ଷପାତ କରିବା କଥା ନୁହେଁ, ବରଂ ହରିଜନକୁ ସୁଖ ଦେବାର ଚେଷ୍ଟା ଅଧିକ କରିବା ଉଚିତ୍ ଏବଂ ହରିଜନଙ୍କୁ ସୁଖ ଦେବାର ଚେଷ୍ଟା କରି ମଧ୍ୟ ବ୍ରାହ୍ମଣର ଦୁଃଖ ପ୍ରତି ଉପେକ୍ଷା କରିବା ଅନୁଚିତ୍ । ଏହିଭଳି କୌଣସି ବର୍ଣ୍ଣ, ଆଶ୍ରମ, ଧର୍ମ, ସମ୍ପ୍ରଦାୟ ଆଦିକୁ ନେଇ ପକ୍ଷପାତ କରିବା ଉଚିତ୍ ନୁହେଁ । ସମସ୍ତଙ୍କ ପ୍ରତି ସମାନ ରୀତିରେ ହିତ ବ୍ୟବହାର କରିବା ଉଚିତ୍ । ମନେକର ଯଦି କେହି ନିମ୍ନ ବର୍ଣ୍ଣରେ ଅଛି, ତେବେ ତାକୁ ଉଚ୍ଚକୁ ଉଠାଇବାକୁ ହେଲେ, ସେହି ବର୍ଣ୍ଣର ଲୋକଙ୍କ ହୃଦୟର ଭାବ ଏବଂ ଆଚରଣକୁ ଶୁଦ୍ଧ ତଥା ଶ୍ରେଷ୍ଠ କରିବା ଦରକାର । ଯଦି ତାଙ୍କ ପାଖରେ କୌଣସି ବସ୍ତୁର ଅଭାବ ଅଛି, ତେବେ ତାକୁ ପୂରା କରିବା ଉଚିତ୍ ଏବଂ ସହାୟତା ମଧ୍ୟ କରିବା ଉଚିତ୍, କିନ୍ତୁ ତାଙ୍କୁ ଉକୁସାଇ (ଉତ୍ସାହିତକରି) ତାଙ୍କ ହୃଦୟରେ ଅନ୍ୟ ବର୍ଣ୍ଣ ପ୍ରତି ଈର୍ଷା ଓ ଦ୍ୱେଷ ଭାବ ପୂରାଇ ଦେବା ଅତ୍ୟନ୍ତ ହାନିକାରକ ଓ ଅମାନୁଷିକ କାର୍ଯ୍ୟ ଅଟେ । ଏହା ଲୋକ-ପର ଲୋକରେ ଅଧୋପତନ କାରୀ ଅଟେ । କାରଣ ଈର୍ଷା, ଦ୍ୱେଷ, ଅଭିମାନ ଆଦି ଦୁର୍ଭାବନା ଦ୍ୱାରା ମନୁଷ୍ୟର ମହାନ ପତନ ହୁଏ । ଯଦି ଏହିଭଳି ଭାବ ବ୍ରାହ୍ମଣଙ୍କ ଠାରେ ଅଛି, ତେବେ ତାଙ୍କର ମଧ୍ୟ ପତନ ହେବ ଓ ଯଦି ହରିଜନଙ୍କ ଠାରେ ଅଛି, ତେବେ ତାଙ୍କର ମଧ୍ୟ ପତନ ହେବ । ଉତ୍ଥାନ ତ ସଦ୍ଭାବ, ସଦ୍ଗୁଣ ଓ ସଦାଚାର ଦ୍ୱାରା ହୋଇଥାଏ ।

ଭୋଜନ, ବସ୍ତ୍ର, ଘର, ଆଦି ନିର୍ବାହ ବସ୍ତୁ ଯାହାଙ୍କ ପାଖରେ କମ୍ ଅଛି, ତାଙ୍କୁ ଏହିସବୁ ବସ୍ତୁ ବିଶେଷ ଦେବାର କଥା, ସେ ଯେ କୌଣସି ବର୍ଣ୍ଣ, ଆଶ୍ରମ, ଧର୍ମ, ସମ୍ପ୍ରଦାୟର ହୋଇଥାଆନ୍ତୁ କାହିଁକି । ସମସ୍ତଙ୍କର ଜୀବନ ଯାପନ ସୁଖ ପୂର୍ବକ ହେବା ଆବଶ୍ୟକ । ସମସ୍ତେ ସୁଖରେ ରୁହନ୍ତୁ, ସମସ୍ତେ ନିରୋଗରେ ରୁହନ୍ତୁ, ସମସ୍ତଙ୍କର ହିତ ହେଉ, କେବେ କାହାକୁ କିଞ୍ଚିନ୍ମାତ୍ର ମଧ୍ୟ ଦୁଃଖ ନ ହେଉ* । ଏହିଭଳି ଭାବରଖି ଯଥାଯୋଗ୍ୟ ବ୍ୟବହାର କରିବା ହିଁ ବାସ୍ତବିକ୍ ସମତା ଅଟେ । ଯାହାକି ପ୍ରତ୍ୟେକ ମନୁଷ୍ୟ ମାନଙ୍କ ପାଇଁ ମଙ୍ଗଳକାରକ । ଗୀତାରେ ଭଗବାନ କହିଛନ୍ତି-

*ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ ।
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍ ।।

**********************************

ବିଦ୍ୟାବିନୟସଂପନ୍ନେ ବ୍ରାହ୍ମଣେ ଗବି ହସ୍ତିନି ।
ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ ।।
(ଗୀତା ।୫ ।୧୮)

ଜ୍ଞାନୀ ମହାପୁରୁଷ ବିଦ୍ୟା- ବିନୟ ଯୁକ୍ତ ବ୍ରାହ୍ମଣଠାରେ ଏବଂ ଚଣ୍ଡାଳଠାରେ ତଥା ଗାଈ, ହାତୀ ଓ କୁକୁର ଠାରେ ମଧ୍ୟ ସମରୂପ ପରମାତ୍ମାଙ୍କୁ ଦେଖିଥାନ୍ତି ।

ବ୍ରାହ୍ମଣ ଏବଂ ଚାଣ୍ଡାଳ ସହିତ ତଥା ଗାଈ, ହାତୀ ଓ କୁକୁର ସହିତ ବ୍ୟବହାର ବିଷମତା ଅନିର୍ବାଯ୍ୟ ଅଟେ । ଏ ମାନଙ୍କ ସହିତ ସମାନ ବ୍ୟବହାର କରିବାକୁ ଶାସ୍ତ୍ର ମଧ୍ୟ କହୁନାହଁ, କରିବା ଉଚିତ୍ ମଧ୍ୟ ନୁହେଁ ଏବଂ କଦାପି କରି ପାରିବା ନାହିଁ ମଧ୍ୟ । ଯେପରି ପୂଜା ବିଦ୍ୟା ବିନୟ ଯୁକ୍ତ ବ୍ରାହ୍ମଣଙ୍କର ହିଁ କରାଯାଏ, ଚାଣ୍ଡାଳର ନୁହେଁ, କ୍ଷୀର ଗାଈର ପିଆ ଯାଏ, କୁକୁରର ନୁହେଁ, ହାତୀ ଭାର ବହନ କରିବାରେ ଲାଗିଥାଏ, କୁକୁର ନୁହେଁ । ଏହି ପାଞ୍ଚଗୋଟି ପ୍ରାଣୀଙ୍କର ଉଦାହରଣ ଦେଇ ଭଗବାନ ଏହା କହିବା ପାଇଁ ଚାହୁଁଛନ୍ତି, କି ଏମାନଙ୍କ ସହିତ ବ୍ୟବହାରରେ ସମତା ସମ୍ଭବ ନ ହେଲେ ମଧ୍ୟ ତତ୍ତ୍ୱତଃ ସମସ୍ତଙ୍କ ଠାରେ ଏକ ପରମାତ୍ମା ପରିପୂର୍ଣ୍ଣ ରୂପେ ଅଛନ୍ତି । ମହାପୁରୁଷଙ୍କ ଦୃଷ୍ଟି ସେହି ପରମାତ୍ମତତ୍ତ୍ୱ ଉପରେ ହିଁ ସଦା-ସର୍ବଦା ରହିଥାଏ । ଏଣୁ ସେମାନଙ୍କର ଦୃଷ୍ଟିରେ କେବେହେଲେ ବିଷମତା ଆସେ ନାହିଁ ।

ଏଠାରେ ଏକ ପ୍ରଶ୍ନ ଜାତ ହେଉଛି କି, ଦୃଷ୍ଟି ବିଷମ ନ ହେଲେ ବ୍ୟବହାରରେ ବିଷମତା କେମିତି ହେବ? ଏହାର ସମାଧାନ ଏହି କି, ନିଜ ଶରୀରର ସମସ୍ତ ଅଙ୍ଗ(ମସ୍ତକ, ପାଦ, ହାତ, ଗୁହ୍ୟଦ୍ୱାର ଆଦି) ରେ ଆମର ଦୃଷ୍ଟି ଅର୍ଥାତ୍ ଆତ୍ମୀୟଭାବ ଏବଂ ହିତଭାବନା ସମାନ ଭାବରେ ଥାଏ । ତଥାପି ମଧ୍ୟ ଆମେ ସେମାନଙ୍କର ବ୍ୟବହାରରେ ଭେଦ ରଖିଥାଉ; ଉଦାହରଣ ସ୍ୱରୂପ କାହା ଦେହରେ ଗୋଡ଼ ବାଜିଗଲେ କ୍ଷମା ଯାଚନା କରି ବିଷ୍ଣୁ ବୋଲି କହି ଦେଉଛେ, ଯଦି କାହା ଦେହରେ ହାତ ବାଜିଯାଏ ତେବେ କ୍ଷମାଯାଚନା କରୁନାହେଁ । ପ୍ରଣାମ ହାତ ଏବଂ ମସ୍ତକ ଦ୍ୱାରା କରୁଛେ, ପାଦରେ ନୁହେଁ । ଗୁହ୍ୟଦ୍ୱାରରେ ବା ପାଦରେ ହାତ ବାଜିଗଲେ ହାତକୁ ଧୋଉଛେ , କିନ୍ତୁ ହାତରେ ହାତ ବାଜିଲେ ନୁହେଁ । କେବଳ ଏତିକି ନୁହେଁ ଗୋଟିଏ ହାତର ଆଙ୍ଗୁଳି ଗୁଡ଼ିକର ବ୍ୟବହାରରେ ମଧ୍ୟ ଭେଦ ରହିଛି । ବୁଢ଼ା ଆଙ୍ଗୁଠି ଏବଂ ତର୍ଜନୀ ଦେଖାଇବାର ଭେଦ ପ୍ରାୟ ସମସ୍ତେ ଜାଣଛନ୍ତି ।

ଏହିଭଳି ଶରୀରର ଭିନ୍ନ-ଭିନ୍ନ ଅଙ୍ଗର ବ୍ୟବହାରରେ ମଧ୍ୟ ଭେଦା-ଭାବ ରହିଛି, କିନ୍ତୁ ଆତ୍ମୀୟଭାବରେ ନୁହେଁ । ଏଣୁ ଶରୀରର କୌଣସି ପୀଡିତଅଙ୍ଗ ପ୍ରତି ଉପେକ୍ଷା ମଧ୍ୟ ହେଉନାହିଁ । ବ୍ୟବହାରରେ ଭେଦ ହେଲେ ମଧ୍ୟ ପୀଡ଼ା ଦୂର କରିବାରେ ଆମେ ସମାନତାର ବ୍ୟବହାର କରୁଛେ । ଶରୀରର ପ୍ରତ୍ୟେକ ଅଙ୍ଗର ସୁଖ-ଦୁଃଖରେ ଆମର ଗୋଟିଏ ଭାବ ରହୁଛି । ଏହିଭଳି ପ୍ରାଣୀମାନଙ୍କ ଠାରେ ଖାଇବା-ପିଇବା, ଗୁଣ, ଆଚରଣ, ଜାତି ଆଦିର ଭେଦ ହୋଇଥିବା ଯୋଗୁଁ ସେମାନଙ୍କ ସହିତ ମହାପୁରୁଷଙ୍କ ବ୍ୟବହାରରେ ଭେଦ ଦେଖିବାକୁ ମିଳେ ଏବଂ ଭେଦ ହେବା ମଧ୍ୟ ଆବଶ୍ୟକ । ପରନ୍ତୁ ସେହିସବୁ ପ୍ରାଣୀମାନଙ୍କ ଠାରେ ଏକ ହିଁ ପରମାତ୍ମା ପରିପୂର୍ଣ୍ଣ ଥିବା ଦୃଷ୍ଟିରୁ ମହାପୁରୁଷଙ୍କ ଦୃଷ୍ଟିରେ କୌଣସି ଭେଦ ନଥାଏ । ସେହି ପ୍ରାଣୀମାନଙ୍କ ପ୍ରତି ମହାପୁରୁଷଙ୍କର ଆତ୍ମୀୟତା, ପ୍ରେମ, ହିତ, ଦୟା ଆଦି ଭାବରେ କୌଣସି ଭେଦଭାବ ଦେଖାଯାଏ ନାହିଁ । ତାଙ୍କ ଅନ୍ତଃକରଣରେ ରାଗ-ଦ୍ୱେଷ, ମମତା, ଆସକ୍ତି, ଅଭିମାନ, ପକ୍ଷପାତ, ବିଷମତା ଆଦିର ସର୍ବଥା ଅଭାବ ହୋଇଯାଏ । ଯେପରି ଶରୀରସ୍ଥ କୌଣସି ଅଙ୍ଗର ଦୁଃଖ ଦୂର କରିବାର ଚେଷ୍ଟା ସ୍ୱାଭାବିକ ହୁଏ, ସେହିଭଳି ଅନ୍ୟ ପ୍ରାଣୀ ଦୁଃଖ ଭୋଗୁଥିବାର ଜଣାପଡ଼ିଲେ ତାର ଦୁଃଖ ଦୂର କରି ସୁଖ ପହୁଞ୍ଚାଇବାର ଚେଷ୍ଟା ମହାପୁରୁଷଙ୍କ ଦ୍ୱାରା ସ୍ୱାଭାବିକ ହୋଇଥାଏ । ସୁତରାଂ ଭଗବାନ ମହାପୁରୁଷଙ୍କୁ ଏଠାରେ ସମଦର୍ଶୀ କହିଛନ୍ତି, ନା କି ସମବର୍ତ୍ତୀ । ଗୀତାରେ ସ୍ଥାନେ-ସ୍ଥାନେ ସମାନ ଦେଖିବାର ବା ସମବୁଦ୍ଧିର କଥା ମଧ୍ୟ କୁହାଯାଇଛି, ଯଥା- **'ସମବୁଦ୍ଧିର୍ବିଶିଷ୍ୟତେ'**(୬ ।୯); **'ସର୍ବତ୍ର ସମଦର୍ଶନ'** (୬ ।୨୯); **'ଆତ୍ମୌପମ୍ୟେନ ସର୍ବତ୍ର ସମଂ ପଶ୍ୟତି'**(୬ ।୩୨); **'ସର୍ବତ୍ର ସମବୁଦ୍ଧୟଃ'** (୧୨ ।୪) **'ସମଂ ସର୍ବେଷୁ ଭୂତେଷୁ. ଯଃ ପଶ୍ୟତି ସ ପଶ୍ୟତି** (୧୩ ।୨୭); ଏବଂ **'ସମଂ ପଶ୍ୟନ୍ ହି ସର୍ବତ୍ର'**(୧୩ ।୨୮) ଇତ୍ୟାଦି ।

ଆଦିଗୁରୁ ଶଙ୍କରାଚାର୍ଯ୍ୟ କହିଛନ୍ତି କି- **ଭାବଦ୍ୱୈତଂ ସଦା କୁର୍ଯ୍ୟାତ୍ କ୍ରିୟାଦ୍ୱୈତଂ ନ କୁତ୍ରଚିତ୍** (ତତ୍ତ୍ୱୋପଦେଶ) ଅର୍ଥାତ 'ଭାବରେ ହିଁ ସଦା ଅଦ୍ୱୈତ ହେବା ଆବଶ୍ୟକ, କ୍ରିୟା(ବ୍ୟବହାର) ରେ କଦାପି ନୁହେଁ (ଗୀତା୫ ।୧୮) ।

*ନାରାୟଣ! ନାରାୟଣ!! ନାରାୟଣ!!!*

